# ବୃହତ୍ ଶିଳ୍ପ ଶାସ୍ତ୍ରମ୍

## ବୃହତାକାର ଗୃହଭୂମିର ମାନଚିତ୍ର




ଲେଖକ—ଜ୍ୟୋ: ପ: ସିଦ୍ଧାନ୍ତ

ଶ୍ରୀ ଦୟାନିଧି ଖଡ଼ଗରାୟ ବିଦ୍ୟାଭୂଷଣ

# ବୃହତ୍ ଶିଳ୍ପ ଶାସ୍ତ୍ରମ୍

ନୂତନ ମୁଦ୍ରଣ

ଲେଖକ—ଜ୍ୟୋତିର୍ବିଦ ପଣ୍ଡିତ

ସିଦ୍ଧାନ୍ତ **ଶ୍ରୀ ଦୟାନିଧି ଖଡ଼ଗରତ୍ନ** ବିଦ୍ୟାଭୂଷଣ

**ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର**



ପ୍ରାପ୍ତିସ୍ଥାନ—**ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ-୨

ଫୋନ୍ ନଂ- ୨୪୬୯୭

**ମୂଲ୍ୟ—ପାଞ୍ଚ ଟଙ୍କା ମାତ୍ର**

# ଭୂମିକା

ଜ୍ୟୋତିଷ ବିଦ୍ୟାର ଅନ୍ତର୍ଗତ ଶିଳ୍ପ ଶାସ୍ତ୍ରମତେ ଗୃହ ନିର୍ମାଣକରି ପୁତ୍ର କଳତ୍ରାଦି ସପରିବାର ବାସ କରିବାର ବିଧେୟ । ଯଦି କାହାର ବାସ୍ତୁଭୂମି ଓ ଗୃହବନ୍ଧର ଦୋଷ ରହିଥାଏ ତେବେ ସାରାଜୀବନ ଦୁଃଖରେ ଭୋଗ କରିବାକୁ ପଡ଼େ । ଗୋଧନ, ବାଳକ, ବାଳିକା, ପୁତ୍ର ପୌତ୍ର ଓ ପରିବାର-ମାନେ ଅକାଳ ମୃତ୍ୟୁମୁଖରେ ପତିତ ହୁଅନ୍ତି । ଗୃହ ମଧ୍ୟରୁ ବିକଟ ଶବ୍ଦ ବାହାରେ ଏଣୁ ଗୃହସ୍ୱାମୀ ସତର୍କ ହୋଇ ଶିଳ୍ପ ଶାସ୍ତ୍ରମତରେ ନୂତନ ଗୃହ ନିର୍ମାଣ କରିବା ଆବଶ୍ୟକ ।

ଏତଦ୍ଦେଶରେ ଯେଉଁ ଯେଉଁ ଶିଳ୍ପଶାସ୍ତ୍ର ବ୍ୟବହାର ହେଉଅଛି ତାହା ଅତୀବ ସ୍ଥୂଳ ତତ୍ତ୍ୱରେ ବାସ୍ତୁ ବିଷୟରେ ଆବଶ୍ୟକୀୟ ବିଷୟ ଯାହାକି ଦରକାର ତାହା ଆଦୌ ନାହିଁ । ଯମଦଣ୍ଡ, ସୂର୍ଯ୍ୟଦଣ୍ଡ, କୋଣଦଣ୍ଡ, ପ୍ରେତଭାଗ, ନରଭାଗ, ଗନ୍ଧର୍ବଭାଗ, ଦୀର୍ଘଭାଗ, ଗର୍ଣ୍ଣିଭେଦ, ନଳାବର୍ତ୍ତିକ ଗୃହ ନବରଙ୍ଗ ଗୃହ ଚକ୍ରଫଳ, ଭୂମିଚକ୍ର ଓ କିଏ କେଉଁ ଜାତୀୟ କେଉଁଠାରେ ଭୂମି ଓ ତାହାର ବିଶେଷତ୍ୱ କଣ ଏପରି କିଛି ଦେଖିବାକୁ ମିଳୁନାହିଁ । ଏଣୁ ଏତଦ୍ଦେଶରେ ଶିଳ୍ପ ଶିକ୍ଷାର ଆଦୌ ଉନ୍ନତିହୋଇ ପାରୁନାହିଁ । ଏଣୁ ଆମ୍ଭେ ବହୁ ପରିଶ୍ରମ ସହକାରେ ନାନା ପ୍ରକାର ବିଦେଶୀୟ ଶାସ୍ତ୍ର ଓ ପ୍ରାଚୀନ ତାଳପୋଥି ସଂଗ୍ରହ କରି ଗୃହବନ୍ଧ ଓ ରଥ ବିଭାଗ ଓ ଅନ୍ୟାନ୍ୟ ବିଭାଗର ସମସ୍ତ ବିଷୟ ଏହି ପୁସ୍ତକରେ ପ୍ରକାଶ କରିଅଛୁ । ଏହାଛଡ଼ା ଶୁଭାଶୁଭ ମୁହୂର୍ତ୍ତାଦିର ବନ୍ଧପକ୍ଷେ ଯାହା ଯାହା ଆବଶ୍ୟକ ତାହା ସମସ୍ତ ଦିଆଯାଇ ଅଛି । ପ୍ରତ୍ୟେକ ଗୃହସ୍ଥ ଓ ଶିଳ୍ପିକାର ଏହି ପୁସ୍ତକ ଦୃଷ୍ଟେ ଗୃହ ନିର୍ମାଣ କଲେ ଗୃହର ସମସ୍ତ ଦୁର୍ଲକ୍ଷଣ ଦୂରହୋଇ ଶୁଭଫଳ ପ୍ରାପ୍ତି ହେବାର ମୋର ପୂର୍ଣ୍ଣ ସମ୍ଭାବନା ।

ଏଣୁ ସମସ୍ତ ଶିଳ୍ପକାର ଓ ଗୃହସ୍ଥମାନଙ୍କୁ ଅନୁରୋଧ କି ଆପଣମାନେ ଏହି ପୁସ୍ତକ ଦୃଷ୍ଟିରେ ନୂତନ ଗୃହମାନ ନିର୍ମାଣ କରି ସୁଖପ୍ରାପ୍ତି ହେଲେ ଅମ୍ଭେ ଶ୍ରମ ସଫଳ ମନେ କରିବୁ । ଇତି ।

ନିବେଦକ— ଲେଖକ

# ସୂଚୀପତ୍ର

| ବିଷୟ | ପୃଷ୍ଠାଙ୍କ |
| --- | --- |


| ବିଷୟ | ପୃଷ୍ଠାଙ୍କ |
| --- | --- |
| ବନ୍ଦନା | ୧ |
| ସୃଷ୍ଟି ସୂଜନା | ୨ |
| ବାସ୍ତୁପୁରୁଷ | ୩ |
| ବ୍ରହ୍ମାଙ୍କୁ ପ୍ରାର୍ଥନା | ୪ |
| ବାସ୍ତୁ ପୁରୁଷ ଜନ୍ମକାଳ | ୫ |
| ବାସ୍ତୁ ପୁରୁଷ ଆର୍ତ୍ତନାଦ | ୫ |
| ବାସ୍ତୁ ପୁରୁଷର ପ୍ରାର୍ଥନା | ୬ |
| ବାସ୍ତୁ ପୁରୁଷକୁ ବ୍ରହ୍ମାଙ୍କର ବରପ୍ରଦାନ | ୬ |
| ଶଙ୍କୁ ଲକ୍ଷଣ | ୮ |
| ଶଙ୍କୁ ନିର୍ଣ୍ଣୟ | ୯ |


## ଦ୍ୱିତୀୟ ପରିଚ୍ଛେଦ


| ବିଷୟ | ପୃଷ୍ଠାଙ୍କ |
| --- | --- |
| ବାସ୍ତୁ ଶୋଧନ ନିୟମ | ୧୧ |
| ଭୂମିର ସ୍ୱାଦୁବାରଣ | ୧୨ |
| ଭୂମିର ବର୍ଣ୍ଣ | ୧୨ |
| ଭୂମିର ଗନ୍ଧ ନିର୍ଣ୍ଣୟ | ୧୨ |
| ଜଳଦ୍ୱାର ଜାତ ନିର୍ଣ୍ଣୟ | ୧୨ |
| ଭୂମି ଶୁଦ୍ଧି | ୧୪ |
| ଭୂମିର ଶୁଭାଶୁଭ ନିର୍ଣ୍ଣୟ | ୧୫ |
| ବାସ୍ତୁ ନିକଟସ୍ଥ ଜଳ ଲକ୍ଷଣ | ୧୫ |
| ଗୃହପାର୍ଶ୍ୱସ୍ଥ ବୃକ୍ଷର ଶୁଭାଶୁଭ ଫଳ | ୧୬ |
| ଗୃହର ନିଷେଧ ସ୍ଥାନ | ୧୮ |
| ଦଗବୃଦ୍ଧି ବା ପୂର୍ବଫଳ | ୧୮ |
| ଷୋଡ଼ଶ ବାସ୍ତୁର ନାମ ଓ ଲକ୍ଷଣ | ୧୯ |
| ଗର୍ତ୍ତ ଖନନ | ୨୦ |
| ଘାପର ଶୁଭାଶୁଭ ଲକ୍ଷଣ | ୨୧ |

ବିଷୟ ପୃଷ୍ଠାଙ୍କ

## ତୃତୀୟ ପରିଚ୍ଛେଦ


ଗୃହାରମ୍ଭ ସୂଚନା ୨୧
ସୂତ୍ରପାତ ୨୨
ଗୃହ ନିର୍ମିତ ଓ ସ୍ତମ୍ଭକାଷ୍ଠ ୨୭
ବନ୍ଧଶୀଳା ୨୮


## ଚତୁର୍ଥ ପରିଚ୍ଛେଦ


ଧ୍ୱଜାଦି ଅଷ୍ଟକର ନିର୍ଣ୍ଣୟ ୨୮
ଘରର ରାଶି ନକ୍ଷତ୍ର ଓ ଶୁଭାଶୁଭ—ଜ୍ଞାନ ୩୨
ନାଗନାଡ଼ି ନ୍ୟାସ ୩୩
ଗଣମିଳନ ୩୩
ରାଜଯୋଟକ ୩୩
ଗୃହର ପରମାୟୁ ସାଧନ ୩୪
ଗୃହର ନଷ୍ଟ ବିଚାର ୩୪
ଧନନାଶର ପ୍ରମାଣ ୩୫
ଉଦାହରଣ ୩୫


## ପଞ୍ଚମ ପରିଚ୍ଛେଦ


ନାଗ ପ୍ରମାଣ ୩୭
ମତାନ୍ତରେ ଶୁଭଦେବା ବିଧି ୩୭
ଅଷ୍ଟବର୍ଗ ନିୟମ ୩୮
କୁଣ୍ଡଳାକୃତ ନାଗ ୩୯
ଗୃହକର୍ଣ୍ଣିକା ବିବରଣ ୪୧


## ଷଷ୍ଠ ପରିଚ୍ଛେଦ


ଗୃହନିର୍ମାଣର ଦିଗ୍‌ବ୍ୟବସ୍ଥା ୪୨
ଦ୍ୱାରଲକ୍ଷଣ ୪୨

| ବିଷୟ | ପୃଷ୍ଠାଙ୍କ |
|---|---|


| ଗୃହର ଭାଗ ନିୟମ | ୪୫ |
|---|---|
| ଘରର ଗର୍ଭଭେଦ | ୪୭ |
| ଦୀର୍ଘଶୂଳ | ୪୭ |
| ଚକ୍ରଭେଦ ଓ ଗଣ୍ଡିଭେଦ ବିଷୟର | ୪୭ |
| ପାତାଳ ଫୁଟ ଘର | ୪୭ |
| ନନ୍ଦାବର୍ତ୍ତିକ ଗୃହ | ୪୭ |
| ନବରଙ୍ଗ ଗୃହ | ୪୭ |


## ସପ୍ତମ ପରିଚ୍ଛେଦ


| ଶରଣ ପଞ୍ଚକ | ୫୦ |
|---|---|
| ପଞ୍ଚୁ ପଞ୍ଚକ | ୫୧ |
| ଲଗ୍ନ ପଞ୍ଚକ | ୫୨ |
| ଲଗ୍ନ ଧ୍ରୁବାଙ୍କ | ୫୨ |
| ସମୟ ଆନୟନ | ୫୨ |
| ତାରାଶୁଦ୍ଧି | ୫୩ |
| ଚନ୍ଦ୍ରଶୁଦ୍ଧି | ୫୩ |
| ଘାତଚନ୍ଦ୍ରାଦି ବାର ତିଥି ଓ ନକ୍ଷତ୍ର ପ୍ରକରଣ | ୫୪ |
| ରବିଶୁଦ୍ଧି | ୫୫ |
| ବାରମୃତ୍ୟୁ ଯୋଗ | ୫୫ |
| ଲଗ୍ନଯୋଗ | ୫୫ |
| ବୃଷ୍ଟିକରଣ ଜ୍ଞାନ | ୫୫ |
| ବୃଷ୍ଟି ଯୋଗ ଭଙ୍ଗ | ୫୭ |
| ଗୃହପ୍ରବେଶ ଯୋଗ | ୫୭ |
| ଲଗ୍ନର ଶୁଭାଶୁଭ ଫଳ | ୫୮ |
| ବାରଫଳ | ୫୮ |
| ଅୀୟସ୍ପର୍ଶତିଥି ଜ୍ଞାନ | ୫୮ |

| ବିଷୟ | ପୃଷ୍ଠାଙ୍କ |
|---|---|
| ନନ୍ଦାଦି ତିଥିମାନ | ୫୯ |
| ମାସଦଗ୍ଧାତିଥି | ୫୯ |
| ଗୃହାରମ୍ଭ ତିଥିଫଳ | ୫୯ |
| ଦଗ୍ଧାନକ୍ଷତ୍ର | ୬୦ |
| ତିଥ୍ୟାମୃତଯୋଗ | ୬୦ |
| ସିଦ୍ଧାମୃତଯୋଗ | ୬୧ |
| ବିଷଯୋଗ | ୬୧ |
| ମୃତ୍ୟୁଯୋଗ | ୬୧ |
| ନକ୍ଷତ୍ରାମୃତ ଯୋଗ | ୬୧ |
| ନକ୍ଷତ୍ର ଫଳମାନ | ୬୨ |
| ପକ୍ଷଫଳ ଜ୍ଞାନ | ୬୨ |
| ମାସଫଳ ନିର୍ଣ୍ଣୟ | ୬୩ |
| ନିରୟଣ ଲଗ୍ନ | ୬୪ |
| ଲଗ୍ନସାଧନ | ୬୫ |
| ନବାଂଶ ସାଧନ | ୬୫ |
| ନବାଂଶ ଗ୍ରହଫଳ | ୬୬ |
| ଗ୍ରହର ଆୟଭାଗ ନିର୍ଣ୍ଣୟ | ୬୬ |
| ଗ୍ରହର ବ୍ୟୟଭାଗ ନିର୍ଣ୍ଣୟ | ୬୬ |
| ଗ୍ରହର ନାଗ ନିର୍ଣ୍ଣୟ | ୬୭ |
| ନାଗଙ୍କ ନାମ | ୬୭ |
| ନାଗ ପତ୍ନୀଙ୍କ ନାମ | ୬୭ |


## ଅଷ୍ଟମ ପରିଚ୍ଛେଦ


| | |
|---|---|
| ଇନ୍ଦ୍ରାଦି ଦିକ୍‌ପାଳଙ୍କ ପୂଜାନିୟମ | ୬୭ |
| ବସୁଧାଦେବ୍ୟୈ ପ୍ରାର୍ଥନା | ୬୯ |
| ବସୁଧା ପୂଜା | ୬୯ |

| ବିଷୟ | ପୃଷ୍ଠାଙ୍କ |
|---|---|
| ନାଗପୂଜା | ୬୯ |
| ନାଗ ପ୍ରାର୍ଥନା | ୭୦ |
| ସାବିତ୍ରୀ ପ୍ରାର୍ଥନା | ୭୦ |
| ମଙ୍ଗଳାଷ୍ଟକ୍ | ୭୦ |
| ଦେବତାମାନଙ୍କର ଦ୍ୱାରବନ୍ଧ ମାପ | ୭୧ |
| ଚତୁଷ୍କୋଣ ମାପ | ୭୨ |
| ଦ୍ୱାରବନ୍ଧ ଭଗନଷ୍ଟିସ୍ଥ | ୭୨ |
| **ନବମ ପରିଚ୍ଛେଦ** | |
| ବିଂଶ ଶଲ୍ୟର ନାମ | ୭୩ |
| ଶଲ୍ୟ ଉଦ୍ଧାର ନିୟମ | ୭୪ |
| ଅନ୍ୟ ପ୍ରକାରର ଶଲ୍ୟସାଧନ | ୭୫ |
| **ଦଶମ ପରିଚ୍ଛେଦ** | |
| ରଥଭାଗ ନିରୂପଣ | ୭୮ |
| ଦଧ୍ନନକ୍ଷତ୍ର ପରିମାଣ | ୮୩ |
| ଜନମୂଣ୍ଡ୍ର ପରିମାଣ | ୮୩ |
| ସମକୋଣମୁକ୍ତ ତ୍ରିଭୁଜ | ୮୪ |
| ଗୋଲାକାର ମାପ | ୮୫ |
| ବୃତ୍ତ ମାପ | ୮୬ |
| **ଏକାଦଶ ପରିଚ୍ଛେଦ** | |
| ଚକ୍ର ବଖାଣ | ୮୬ |
| କୂର୍ମଚକ୍ରର ମଧ୍ୟଦେଶ | ୮୬ |
| କୂର୍ମଚକ୍ରର ପୂର୍ବଦେଶ | ୮୮ |
| କୂର୍ମଚକ୍ରର ଅଗ୍ନି କୋଣସ୍ଥ ସ୍ଥାନମାନ | ୮୮ |
| କୂର୍ମଚକ୍ରର ଦକ୍ଷିଣଦିଗ ସ୍ଥାନ | ୮୮ |
| କୂର୍ମଚକ୍ରର ନୈର୍ଋତ କୋଣ ସ୍ଥାନମାନ | ୮୮ |
| କୂର୍ମଚକ୍ରର ପଶ୍ଚିମଦିଗସ୍ଥିତ ସ୍ଥାନମାନ | ୮୯ |

| ବିଷୟ | ପୃଷ୍ଠାଙ୍କ |
|---|---|
| କର୍ମଚକ୍ରର ଉତ୍ତରସ୍ଥିତ ସ୍ଥାନମାନ | ୮୯ |
| କୂର୍ମଚକ୍ରର ଐଶାନ୍ୟକୋଣସ୍ଥ ସ୍ଥାନମାନ | ୮୯ |
| କୂର୍ମଚକ୍ରର ନକ୍ଷତ୍ରବେଧ ଫଳ | ୯୦ |
| କୂର୍ମଚକ୍ର ନକ୍ଷତ୍ର ବୋଧ | ୯୦ |
| ନାଗଶୟନ ଚକ୍ର | ୯୧ |
| ନାଗଶୟନ ବଶିଷ୍ଟ ମାସରେ ଗୃହ କର୍ତ୍ତବ୍ୟ | ୯୧ |
| ଧ୍ୱଜାଦ୍ୟ ବକ୍ଷରେ ଗୃହଦ୍ୱାର ନିର୍ଣ୍ଣୟ | ୯୧ |
| ଧ୍ୱଜାଦ୍ୟର ସ୍ଥାପନ ବିଧିଚକ୍ର | ୯୨ |
| **ଦ୍ୱାଦଶ ପରିଚ୍ଛେଦ** | |
| ସାମାନ୍ୟାକାର ଗୃହ ଭୂମିର ମାନଚକ୍ର | ୯୩ |
| ଗୃହଦାକାର ଗୃହଭୂମି ମାନଚକ୍ର | ୯୪ |
| ଧ୍ୱଜାଦ୍ୟ ବକ୍ଷର ଗୃହମୁଖ ନିର୍ଣ୍ଣୟ | ୯୫ |
| ମତାନ୍ତରେ ବାସ୍ତୁଭୂମିର ମାନଚକ୍ର | ୯୫ |
| ଗୃହକର୍ଣ୍ଣିକା ଚକ୍ର | ୯୭ |
| କୂର୍ମ ଭୂମି ଲକ୍ଷଣ | ୯୮ |
| ଶକଟାର ଭୂମି ଲକ୍ଷଣ | ୯୮ |
| ସ୍ୱର୍ଗଭୂମି ଲକ୍ଷଣ | ୯୮ |
| ମୃଦଙ୍ଗ ଭୂମି ଲକ୍ଷଣ | ୯୮ |
| ବ୍ୟଜନ ଭୂମି ଲକ୍ଷଣ | ୯୯ |
| ଭଦ୍ରାସନ ଭୂମି ଲକ୍ଷଣ | ୯୯ |
| ଚକ୍ରାକାର ଭୂମି ଲକ୍ଷଣ | ୯୯ |
| ବୃହନ୍ମୁଖ ଭୂମି ଲକ୍ଷଣ | ୯୯ |
| ଦଣ୍ଡଭୂମି ଲକ୍ଷଣ | ୧୦୦ |
| ବିଷମ ଭୂମି ଲକ୍ଷଣ | ୧୦୦ |
| ପ୍ରଣବ ଭୂମି ଲକ୍ଷଣ | ୧୦୦ |
| ଧନୁ ଆକୃତ ଭୂମି ଲକ୍ଷଣ | ୧୦୦ |

ବୃହତ୍ ଶିଳ୍ପ ଶାସ୍ତ୍ରମ୍‌ର ସୂଚିପତ୍ର ସମାପ୍ତ

# ବୃହତ୍ ଶିଳ୍ପ ଶାସ୍ତ୍ରମ୍



## ଗଣେଶଙ୍କ ବନ୍ଦନା

ପ୍ରଣମ୍ୟଂ ଗୁରୁଦେବୀ ଗଣନାୟକଂ ଚ ରୁଦ୍ରାତ୍ମଜଂ ବିଘ୍ନବିନାଶନଂଚ
ବିଶେଷତୋ ଲୋକ ହିତାୟ ବକ୍ଷେ ପ୍ରବକ୍ଷାମି ଗୃହକର୍ମ ଶିଳ୍ପଶାସ୍ତ୍ରମ୍
ସର୍ବ ପ୍ରଥମେ ଦେବ ମହାଦେବଙ୍କ ପୁତ୍ର ସର୍ବ କର୍ମାଗ୍ରପୂଜ୍ୟ
ବିଘ୍ନ ବିନାଶକାରୀ ଗଣେଶ ପାର୍ବତୀ ନନ୍ଦନଙ୍କୁ ପ୍ରଣାମକରି ଲୋକ-
ବର୍ଗଙ୍କ ହିତ କାମନାର୍ଥେ ଗୃହାଦି କର୍ମରେ ବ୍ୟବହାର ହେଉଥିବା
ଶିଳ୍ପ ଶାସ୍ତ୍ରକୁ ବ୍ୟାଖ୍ୟା କରି ଜଣାଉଅଛି କି, ଏ ପୁସ୍ତକ ସମାପନାର୍ଥେ
ମମବିଘ୍ନ ବିନାଶ କରନ୍ତୁ ।

ଶ୍ରୀ ଶ୍ରୀ ଭାସ୍କର ଶିରତ୍ନକ୍ ଶ୍ରୀ ସୋମବିମ୍ବେଶ୍ୱରଃ ।
ଶ୍ରୀ ଶ୍ରୀ ପାବକ ମଣ୍ଡଳାସନ ବିଭବସ୍ତୁଜଃ ପ୍ରକାଶୋମହାନ୍
ଶ୍ରୀ ଶ୍ରୀ ତୈଜସ ପୁଞ୍ଜ ମଣ୍ଡଳାଗତ୍ୟ ସତ୍ୟଂ ଚ ତନ୍ନାସନେ
ବିଘ୍ନାଣାଂ ପରମାଙ୍କହେତୁ ମନଘଂ ବନ୍ଦେ ପରଂ ଦୈବତମ୍ ।

———

ପ୍ରଣମ୍ୟଂ ଶିବମାଦେବଂ ଚନ୍ଦ୍ରାର୍ଦ୍ଧକୃତ ଶେଖରଂ ।
ସଂଗୃହ୍ୟ ଶିଳ୍ପଶାସ୍ତ୍ରାଣା ମୁଦ୍ରଣାର୍ଥଂ ମୟାବହା ।

ରବିଆଦି ନବଗ୍ରହ ଓ ଅର୍ଦ୍ଧଚନ୍ଦ୍ରାଳଂକୃତ ଶ୍ରୀଚନ୍ଦ୍ରଶେଖର
ମହାଦେବଙ୍କୁ ପ୍ରଣାମ କରି ନାନା ଶାସ୍ତ୍ରରୁ ସଂଗ୍ରହ ସହିତ ଗଦ୍ୟା-
କାରରେ ଏହିଶାସ୍ତ୍ରକୁ ଲୋକ ହିତାର୍ଥେ ମୁଦ୍ରଣ ଓ ପ୍ରକାଶ କରାଉଅଛି ।

ନମସ୍କୃତ୍ୟଂ ମୁନିନାଂଚ ବରିଷ୍ଠଂ ମୁନି ପୁଙ୍ଗବଂ
ଶିଳ୍ପଶାସ୍ତ୍ରଂ ମହଦ୍ ବାସ୍ତୁବୋଧାର୍ଥଂ କଳତଂ ମୟା ।

ସୃଷ୍ଟି ଶାସ୍ତ୍ର ପ୍ରବର୍ତ୍ତିକ ସମସ୍ତ ମୁନିବର୍ଗ ଓ ଶିଳ୍ପ ଶାସ୍ତ୍ରଜ୍ଞ ବରିଷ୍ଠ ମୁନିଙ୍କୁ ପ୍ରଣାମ କରି ମାନବ କୁଳର ହିତ କାମନାର୍ଥେ ଏହି ସୁବୃହତ୍ ଶିଳ୍ପ ଶାସ୍ତ୍ରକୁ ଉଲ୍ଲେଖ କରୁଅଛି ।

ଯଦା ଭୂ ପୃଥିବୀଂ ସୃଷ୍ଟ୍ୱା ସ୍ଥୈର୍ଯ୍ୟଂ ନ ପ୍ରାପସ ଯଦା
ଚକ୍ରପାଣିଶ୍ଚ ବୈ ମତ୍ୟଂ ମହଦ୍ ବୈ ପ୍ରାପ୍ତବାନ୍ତଦା ।

ଯେଉଁକାଳରେ ଅନାଦି ଶକ୍ତି ଭଗବାନ ମଧୁ ନାମକ ଅସୁରକୁ ମାରି ମେଦମେଦା ପୃଥିବୀ ଅର୍ଥାତ୍ ମେଦିନୀ ସ୍ଥାପନ କରିଥିଲେ ସେହି ସମୟରେ ଏହି ମେଦିନୀ ଅଗାଧ ଜଳରେ ଭାସି ଚଞ୍ଚଳ ହେବାର ଦେଖି ଭଗବାନ ବିଶେଷ ଦୁଃଖିତ ହୋଇ କଳ୍ପନା ସୃଷ୍ଟି କଲେ ।

ଲୋମଭିଶ୍ଚ ଷ୍ଟଭିସ୍ତସ୍ୟ ନଗାନଷ୍ଟ ଯଥାକ୍ରମଂ
ରଚୟାମାସ ଦୈତ୍ୟାରି ମେଦିନୀ ଚଳ ଶାନ୍ତୟେ ।

ଚଳାମୟୀ ଚଞ୍ଚଳା ପୃଥିବୀ ଅଚଳ ରହିବା ସକାଶେ ଭଗବାନ୍ ନିଜ କାୟାରୁ ଆଠଟଗୋଟି ଲୋମ ଉପାଡ଼ି ଆଠଗୋଟି ପର୍ବତ ସୃଷ୍ଟି ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଏହିପରି ଚତୁର୍ଦ୍ଦିଗ ଓ ଅଗ୍ନି, ନୈଋତ ବାୟବ୍ୟ, ଈଶାନ ଏହିପରି ଚତୁଷ୍କୋଣ ଆଠସ୍ଥାନରେ ଆଠ ପର୍ବତ ସ୍ଥାପନ କରିଅଛନ୍ତି ।

ଯଥା ପୂର୍ବଂ ବେପମାନାଂ ଦୃଷ୍ଟ୍ୱା ଯୋଗିକୁଳୋତ୍ତମଃ
ଅଷ୍ଟାଙ୍ଗ ଯୋଗମାଶ୍ରିଧ ଜନୟାମାସସ୍ତାତଦା ।

ପୃଥିବୀର ଚତୁର୍ଦ୍ଦିଗ ଓ ଚତୁଷ୍କୋଣରେ ଅଷ୍ଟ ପର୍ବତ ସ୍ଥାପିତ ହେଲେ ମଧ୍ୟ ପୁନଶ୍ଚ ଚଞ୍ଚଳା ପୃଥିବୀ ପୂର୍ବପରି ସଚଳ ହେଲା । ଅଚଳାର ସେହି ଚଞ୍ଚଳ ସ୍ୱଭାବ ଦେଖି ମହାଦେବଙ୍କ ଅଷ୍ଟାଙ୍ଗ ଯୋଗ ବଳରେ ଆଦିମାତାଙ୍କୁ ଧ୍ୟାନ କରିଥିଲେ । ଶିବଙ୍କ ସେହି ଅଷ୍ଟାଙ୍ଗ ଯୋଗ ଧ୍ୟାନ ବଳରୁ ଅଷ୍ଟଚଣ୍ଡୀ ଉତ୍ପତ୍ତି ହେଲେ ।

ସଂପୂଜ୍ୟତା ସ୍ତୁଦାଧାତା ନଗାନଂ ପୃଷ୍ଠଭଗକେ
ସ୍ଥାପୟନ୍ନବନୀ ସାତ ପ୍ରାପନଶ୍ଚଳତାଚଦା ।

ଈଶ୍ୱରଙ୍କ ଯୋଗବଳରୁ ଚଣ୍ଡିକାଙ୍କର ଉତ୍ପତ୍ତି ଦେଖି ବ୍ରହ୍ମା ସେହି ଚଣ୍ଡୀମାନଙ୍କୁ ପୂଜା ଓ ଆରାଧନା କରି ଅଷ୍ଟ ପର୍ବତ ଉପରେ ସ୍ଥାପନ କଲେ । ଅଷ୍ଟଚଣ୍ଡୀ ସେହି ପର୍ବତ ଗୁଡ଼ିକୁ ମାଡ଼ି ବସିବାରୁ ପୃଥିବୀ ନ ହଲି ଅଟଳ ରହିଲା ।

ବ୍ରାହ୍ମଣୀ ପୂର୍ବତଶ୍ଚାଗ୍ନି କୋଣେ କୌମାରୀସାତଥା
ଦକ୍ଷିଣେ ଚୈବ ବାରାହୀ ନାରାୟଣୀଚ ନୈଋତେ ।
ବାୟବ୍ୟେ ଚାମୁଣ୍ଡାଚୈବ ତଥନ୍ଦ୍ରାଣୀଚ ପଶ୍ଚିମେ
ମାହେଶ୍ୱର୍ଯ୍ୟୋତ୍ତରେ ସ୍ୟାତ୍ତୁ ଐଶାନ୍ୟେ ଗୃହ ଲକ୍ଷ୍ମୀତା ।

ଏହି ଅଷ୍ଟ ଚଣ୍ଡୀମାନଙ୍କ ମଧ୍ୟରୁ ପୂର୍ବ ଦିଗରେ ବ୍ରାହ୍ମଣୀ ଅଗ୍ନିକୋଣରେ କୌମାରୀ ଦକ୍ଷିଣରେ ବାରାହୀ ନୈର୍ଋତେ ନାରାୟଣୀ ପଶ୍ଚିମରେ ଇନ୍ଦ୍ରାଣୀ ବାୟୁବ୍ୟରେ ଚାମୁଣ୍ଡା ଉତ୍ତରରେ ମାହେଶ୍ୱରୀ ଏବଂ ଐଶାନ୍ୟ କୋଣରେ ଲକ୍ଷ୍ମୀ ଦିଗାଧିପତି ହୋଇ ପୃଥିବୀର ଅଷ୍ଟଦିଗକୁ ମାଡ଼ି ବସିଲେ ।

ତତସ୍ତାଃ ଶକ୍ତିକା ଗୃଷ୍ଟା ଦିକ୍ଷୁଗୃପି ଯଥାକ୍ରମଂ
ଗୃହାରମ୍ଭେ ଯଥାଶକ୍ତ୍ୟ ପୂଜୟେଜ୍ଜ ଧ୍ରୁବଂଗୃହୀ ।

ପୂର୍ବୋକ୍ତ କାରଣମାନଙ୍କରୁ ଗୃହାରମ୍ଭ କରିବା ସମୟରେ ପୃଥିବୀର ନିଶ୍ଚଳତାକାରିଣୀ ଅଷ୍ଟଦିଗାଧିପତି ଅଷ୍ଟ ଚଣ୍ଡୀଙ୍କୁ ପୂଜା କରିବା ଏକାନ୍ତ ଆବଶ୍ୟକ । ଅଷ୍ଟ ଚଣ୍ଡୀଙ୍କୁ ଶାନ୍ତ ନ କରି ଗୃହାରମ୍ଭ କରିଲେ ଗୃହ କର୍ତ୍ତାର ବିଶେଷ କ୍ଷତି ହୁଏ ।

## ବାସ୍ତୁପୁରୁଷ

ଆବ୍ରହ୍ମଭୁବନାଲ୍ଲୋକଂ ଗୃହସ୍ଥାଶ୍ରମ ମାଶ୍ରିତାଃ
ଯତସ୍ତସ୍ମାତ୍ ଗୃହାରମ୍ଭଃ କରଣୀୟୋ ପ୍ରଯତ୍ନତଃ ।

ବ୍ରହ୍ମାଙ୍କ ସୃଜିତ ଅବନୀ ମଣ୍ଡଳରେ ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଶୂରଜାତି ବା କୌଣସି ଧର୍ମାବଲମ୍ବୀ ହୁଅନ୍ତୁ ଗୃହ ସମସ୍ତଙ୍କର

ଆବଶ୍ୟକ, ଗୃହ ବ୍ୟକ୍ତିର ଅନ୍ୟ ଅବସ୍ଥ କାହାର ନାହିଁ ଏଣୁ ଗୃହ ପ୍ରତି ବିଶେଷ ଯତ୍ନ ରଖିବା କର୍ତ୍ତବ୍ୟ ଅଟେ ।

ପରଶରଃ ପ୍ରାହବୃହଦ୍ରଥାୟ, ବୃହଦ୍ରଥାପ୍ରାହତ ବିଶ୍ୱକର୍ମଣେ
ସ ବିଶ୍ୱକର୍ମା ଜଗତାଂହିତାୟ, ପ୍ରୋବାଚଶାସ୍ତ୍ରଂ ବହୁଭେଦଯୁକ୍ତମ୍ ।

ପରାଶର ମହାମୁନି ସର୍ବପ୍ରଥମେ ବୃହଦ୍ରଥଙ୍କୁ ଏହି ବାସ୍ତୁପୁରୁଷ ବୃତ୍ତାନ୍ତ କହିଥିଲେ । ତତ୍ପରେ ବୃହଦ୍ରଥ ବିଶ୍ୱକର୍ମାଙ୍କୁ କହିଲେ, ବିଶ୍ୱକର୍ମା ଜଗତର ହିତପାଇଁ ଶିଳ୍ପ କାର୍ଯ୍ୟରେ ଅଧିପତି ହେଲେ ।

ପ୍ରବକ୍ଷାମି ମୁନିଶ୍ରେଷ୍ଠ ଶୃଣୁଷ୍ୱୈକାଗ୍ରମାନସଃ
ଯଦୁକ୍ତଂ ସମ୍ଭୁନାପୂର୍ବଂ ବାସ୍ତୁଶାସ୍ତ୍ରଂ ପୁରାତନମ୍ ।

ଗୃହ ନିର୍ମାଣ ସମ୍ପର୍କରେ ଯେଉଁ ବିଧିବିଧାନମାନ ଶିବ କହିଛନ୍ତି ସେହି ସମ୍ବନ୍ଧରେ ବରାହ ପ୍ରଭୃତି ମୁନି ଶ୍ରେଷ୍ଠମାନେ ଯାହା ଯାହା ପ୍ରକାଶ କରିଅଛନ୍ତି ସେଥିମଧ୍ୟରୁ କିୟଦଂଶ ଏହିଶାସ୍ତ୍ରରେ ପ୍ରକାଶ କରୁଅଛୁଁ । ଏହି ଶିଳ୍ପଶାସ୍ତ୍ରାଧିପ ବିଶ୍ୱକର୍ମା କହୁଅଛନ୍ତି ।

ବିଶ୍ୱକର୍ମୋବାଚ

ପୁରାତ୍ରେତାଯୁଗେହ୍ୟାସୀନ୍ମହାଭୂତଂ ବ୍ୟବସ୍ଥିତଂ
ଶାପ୍ୟମାନଂ ଶରୀରେଣ ଛାଦୟତ୍ ଭୁବନଂତତଃ ।

ପୂର୍ବକାଳରେ ତ୍ରେତାଯୁଗରେ ଏକ ମହାନ୍ ଭୂତ ପୁରୁଷ ଉଦ୍ଭବ ହୋଇଥିଲା । ସେ ଶାପପାଇ ଜଗତକୁ ନିଜ ଶରୀରରେ ଘୋଡ଼ାଇ ଦେଇଥିଲା ।

ତଂଦୃଷ୍ଟ୍ୱା ବିସ୍ମିତା ଦେବା ଗତା ସେନ୍ଦ୍ରାଭୟାବୃତାଃ
ତତସ୍ତେ ଭୟମାପନ୍ନା ବ୍ରହ୍ମଣଂ ଶରଣଂ ଯଯୁଃ ।

ସେହି ମହାନ୍‌ଭୂତର ଏହି ବିଶାଳ ମୂର୍ତ୍ତିକୁ ଦେଖି ସକଳ ଦେବତାମାନେ ଆଶ୍ଚର୍ଯ୍ୟ ହେଲେ ଏବଂ ମହାଭୟ ପାଇ ଦେବତାମାନେ ବ୍ରହ୍ମାଙ୍କ ନିକଟରେ ଶରଣ ପଶି ପ୍ରାର୍ଥନା କଲେ ।

ବ୍ରହ୍ମାଙ୍କୁ ପ୍ରାର୍ଥନା

ଭୂତ ଭାବନ ଭୂତେଶ ମହତ୍ ଭୟମୁପସ୍ଥିତଂ
କିଂବା କ୍ୱାମେ ବା ଗଚ୍ଛ ମୋଭୟଂ ଲୋକ ପିତାମହଃ ।

ବ୍ରହ୍ମାଙ୍କୁ ( ବିଦଶ ) ଦେବତାମାନେ ସ୍ତବ କଲେ କ, ହେ ବିକାଳଜ୍ଞ ପିତାମହ ! ଆମ୍ଭେମାନେ ଏ କରାଳରୂପୀ ଭୂତ କବଳରେ ପଡ଼ି ମହାଭୟ ଗ୍ରସ୍ତ ହେଉଅଛୁ ଦୟାବହି ଉଦ୍ଧାର ପଥ ଦେଖାଇ ଦିଅନ୍ତୁ ।

ବ୍ରହ୍ମୋବାଚ

ମାଭୟଂ କୁରୁଧ୍ୱେ ଦେବ ! ବିଗୃହ୍ୟୈତ ମହାବଳଂ
ବିନକ୍ଷିପ୍ତମଧୋବକ୍ତ୍ରଂ ସ୍ଥିତାସ୍ତନୈବତେମୃଷାଃ ।

ବ୍ରହ୍ମାଙ୍କ ମୁଖରୁ ଦେବତାମାନେ ଏହିପରି ଅଭୟ ଉପଦେଶ ପାଇଲେ କ ହେ ଦେବବୃନ୍ଦ ! ତୁମ୍ଭେ ଏହି ଅସୁରକୁ ଧରିପୃଷ୍ଠରେ ଅଧୋମୁଖ କରି ପକାଇ ସେହି ଦୈତ୍ୟ ପୃଷ୍ଠଭାଗରେ ସବ ଦେବ-ମାନେ ସ୍ଥାନାଧିକାର କର । ଦେବତାମାନେ ସେହି ଆଦେଶ ଅନୁସାରେ କାର୍ଯ୍ୟକରି ଭୟ ଦୂରକଲେ । ତାହାର ନାମ ବାସ୍ତୁପୁରୁଷ ।

—ବାସ୍ତୁପୁରୁଷ ଜନ୍ମକାଳଃ—

ଭବେଦେବ ବାସ୍ତୁପୁରୁଷ ବ୍ରହ୍ମାସନ ସୁଜନ୍ମପ୍ରଭୂଃ
କୃଷ୍ଣପକ୍ଷେ ଦଶମ୍ୟାଯ୍ୟାଂ ମାସି ଭାଦ୍ରପଦେ ତଥା ।
ଶନିବାରେ ତସ୍ୟ ଜନ୍ମ ଆରଦ୍ରା ନକ୍ଷତ୍ରେ ତଥା
ଯୋଗସ୍ତସ୍ୟ ବ୍ୟତିପାତଃ କରଣଂ ବିଷ୍ଟି ସଂଜ୍ଞକମ୍ ।

ଏହି ବାସ୍ତୁପୁରୁଷକୁ ଭାଦ୍ରମାସ କୃଷ୍ଣପକ୍ଷ ଦଶମୀତିଥି ଶନିବାର ଆର୍ଦ୍ରା ନକ୍ଷତ୍ର ବ୍ୟତିପାତ ଯୋଗ ଓ ବିଷ୍ଟି କରଣରେ ବ୍ରହ୍ମା ଜାତକରି ଅଛନ୍ତି ।

—ବାସ୍ତୁ ପୁରୁଷର ଆର୍ତ୍ତନାଦ—

ଯଦାଭଦ୍ରାନ୍ତରେଯୋଗଃ କୁଳିକେତୁସ୍ତଥୈବଚ
ତଦାକୃତ୍ୱା ମହାଶବ୍ଦଂ ବ୍ରହ୍ମାଣଂ ସମୁପସ୍ଥିତ ।

ଏହି ବାସ୍ତୁପୁରୁଷର ଅଧୋମୁଖ ସମୟରେ ଭଦ୍ରାନ୍ତଯୋଗ ଓ କୁଳିକ ଯୋଗ ହୋଇଥିଲା । ସେହି ସମୟରେ ବାସ୍ତୁପୁରୁଷ ଘୋର ଗର୍ଜନ ଓ ଆର୍ତ୍ତନାଦ କରି ବ୍ରହ୍ମାଙ୍କୁ ଗୁହାରି କରୁଣ ସ୍ୱରରେ ଏହିପରି ପ୍ରାର୍ଥନା କଲା ।

—ବାସ୍ତୁ ପୁରୁଷର ପ୍ରାର୍ଥନା—

ଚରାଚରମିଦଂ ସର୍ବଂ ତ୍ୱୟାସୃଷ୍ଟଂ ଜଗଦଗୁରୋଃ
ବିନାପରାଧେ ନାଥ ମାଂ ପୀଡ଼ୟନ୍ତି ସୁରାଃକଥମ ।

ବାସ୍ତୁପୁରୁଷ ଦେବତାମାନଙ୍କର ପ୍ରପୀଡ଼ିତ କଷ୍ଟ ସହ୍ୟ ନପାରି ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ, ହେ ପ୍ରଭୋ ! ଜଗତ ସୃଷ୍ଟିକର୍ତ୍ତା ଆପଣ ଚରାଚର ସହିତ ସମସ୍ତ ସୃଷ୍ଟି ସର୍ଜନା କରି ଅଛନ୍ତି, ଆପଣ ଜଗତର ଗୁରୁ ଓ ପିତାମହ, ଆପଣ ଥାଉଁ ଥାଉଁ ଦେବତାମାନେ ମୋତେ ବିନା ଅପରାଧରେ ଏ ଦଣ୍ଡ ଦେଉଅଛନ୍ତି କାହିଁକି ? ମୋତେ ମୁକ୍ତ କରଅନ୍ତୁ ଏହାଶୁଣି ବ୍ରହ୍ମାଙ୍କର ଦୟାହେଲା ।

* ବାସ୍ତୁ ପୁରୁଷକୁ ବ୍ରହ୍ମାଙ୍କର ବର ପ୍ରଦାନ *

ବରଂ ତସ୍ମୈ ଦଦୌପ୍ରୀତୋ ବ୍ରହ୍ମାଲୋକ ପିତାମହଃ ।
ଗ୍ରାମେ ବା ନଗରେ ବାପି ଦୁର୍ଗେ ବା ପତ୍ତନେଽପିବା
ପ୍ରସାଦେଷ ପ୍ରପାୟାଂଚ ଜଳୋଦ୍ୟାନେ ତଥୈବଚ
ଯସ୍ତ୍ୱାଂନପୂଜୟେତ୍ ମର୍ତ୍ତ୍ୟୋ ମୋହାତ୍ ବାସ୍ତୁନର ପ୍ରଭୋ
ଆଶ୍ରିୟଂ ମୃତ୍ୟୁ ମାପ୍ନୋତି ବିଘ୍ନସ୍ତସ୍ୟ ପଦେ ପଦେ
ବାସ୍ତୁ ପୂଜା ମକୁର୍ବାଣ ସ୍ତବାହାରୋଭବିଷ୍ୟତି ।

ବାସ୍ତୁ ପୁରୁଷର କାକୁସ୍ତର ବିନତ ପ୍ରାର୍ଥନାରେ ବ୍ରହ୍ମା ସନ୍ତୁଷ୍ଟ ହୋଇ ତାକୁ ଏହି ଆଦେଶ କଲେ କି ହେ ବାସ୍ତୁ ପୁରୁଷ ! ତୁମ୍ଭେ ଗ୍ରାମ ନଗର, ପୁର, ପଲ୍ଲୀ, ଦୁର୍ଗ, ପତ୍ତନ, ବାପୀ କୂପ ତଡ଼ାଗ ଅଟ୍ଟାଳିକା ଓ ଗୃହ ପ୍ରଭୃତି ନିର୍ମାଣରେ ପ୍ରତିଟି ସ୍ଥାନରେ ପୂଜା ପାଇବ । ଯେଉଁ ବ୍ୟକ୍ତି ବାସ୍ତୁ ପୁରୁଷକୁ ପୂଜା ନ କରି ଗର୍ବବନ୍ଧ କାର୍ଯ୍ୟମାନ କରିବ ସେ ବ୍ୟକ୍ତି ଲକ୍ଷ୍ମୀ ଚ୍ୟୁତ ହେବ ଏବଂ ପ୍ରତିକାର୍ଯ୍ୟରେ ତାହାର ବିଘ୍ନ-ଘଟିବ ଓ ତୁମ କୋପରେ ସେ ବ୍ୟକ୍ତି ଧ୍ୱଂସ ପ୍ରାପ୍ତ ହେବ ।

ଇତ୍ୟୁକ୍ତ୍ୱାନ୍ତର୍ଦଧେ ସଦ୍ୟାଦେବୋ ବ୍ରହ୍ମ ବିଦାଂବରଃ
ବାସ୍ତୁ ପୂଜାଂ ପ୍ରକୁର୍ବିତ ଗୃହାରମ୍ଭେ ଧ୍ରୁବଂ ତତଃ ।

ବ୍ରହ୍ମା ବାସ୍ତୁ ପୁରୁଷକୁ ଏହିପରି ବର ପ୍ରଦାନ କରି ଅନ୍ତର୍ହିତ ହେଲେ । ତେଣୁ ଗୃହାରମ୍ଭାଦି ଶୁଭକାର୍ଯ୍ୟମାନଙ୍କରେ ବାସ୍ତୁ ପୁରୁଷକୁ ପୂଜା କରାଯାଏ ।

ବଜ୍ରାଗ୍ନି ଦୂଷିତେ ଭଗ୍ନେ ସର୍ପ ଚଣ୍ଡାଳ ବେଷ୍ଟିତେ
ଉଲୂକ ବାସିତେ ସପ୍ତ ରାତ୍ରି ଷୁ କାକ ରୋଦତେ
ମୃଗାଧି ବାସିତେ ରାତ୍ରୌ ଗୋମାର୍ଜାରାଦି ଭନଦତେ
ବାରଣା ଶ୍ୱାଦି ରୁତେ ସ୍ତ୍ରୀଣାଂ ଯୁଦ୍ଧାଭି ଦୂଷିତେ
କପୋତକ ବେଶ ଦୃଷ୍ଟେ ମଧୂନାଂ ମାଡ଼ ଦୂଷିତେ
ଅନ୍ୟୈଶ୍ଚୈବେ ମହାପାପୈ ଦୂଷିତେ ଶାନ୍ତି ମାଚରେତ୍ ।

କୌଣସି ଗୃହ ଯେବେ ବଜ୍ର ଅଗ୍ନି ଦ୍ୱାରା ଭସ୍ମ କିମ୍ବା ନଷ୍ଟ ହୁଏ ନତୁବା ସର୍ପ ଚଣ୍ଡାଳ ବାସ କରନ୍ତି, ଉଲୁକ ( ପେଚା ) ରାବକରେ ସପ୍ତ ରାତ୍ରି ପର୍ଯ୍ୟନ୍ତ କାଳ ଅନବରତ ରାବଦିଏ, ରାତିରେ ମୃଗ ବାସକରେ ଗୋ-ବିରାଡ଼ି ସର୍ବଦା ରାବକରନ୍ତି, ସ୍ତ୍ରୀମାନେ କଳହ କରନ୍ତି, କପୋତ ବାସକରେ କିମ୍ବା ମଧୁଫେଣା ଦେଖାଯାଏ ତେବେ ସେ ଗୃହରେ ନିଶ୍ଚୟ ଅନିଷ୍ଟ ଘଟିବ । ଏହି ସୂଚନା ଦେଖିଲେ ସେହି ଗୃହର ଦୋଷ ନିବାରଣ ସକାଶେ ବାସ୍ତୁ ପୁରୁଷକୁ ପୂଜା କରିବ । ଏହା ବ୍ରହ୍ମା ପୁରୁଷଙ୍କୁ କହିଅଛନ୍ତି ।

ବ୍ରତେ ବନ୍ଧେ ବିବାହେଚ ତଥୈବଚ ମହୋତ୍ସବେ
ଜୀର୍ଣ୍ଣୋଦ୍ଧରେ ତଥା ଶଲ୍ୟ ନ୍ୟାସେ ଚୈବ ବିଶେଷତଃ

ବ୍ରତ ଉପନୟନ ବିବାହ ମହୋତ୍ସବ, ଜୀର୍ଣ୍ଣୋଦ୍ଧାର ଗୃହାରମ୍ଭାଦି ଶଲ୍ୟୋଦ୍ଧାର ( ଖୁଣ୍ଟି ମାରିବା ) ସମୟରେ ବାସ୍ତୁ ପୂଜାକଲେ ସକଳ ଅରିଷ୍ଟ ଖଣ୍ଡିତ ହେବ ।

ଦ୍ୱାରାଭି ବର୍ତ୍ତନେ ଚୈବ ତଥା ଗୃହ ପ୍ରବେଶନେ ।
ପ୍ରତି ବର୍ଷର ଯଜ୍ଞଦୌ ତଥା ପୁତ୍ରସ୍ୟ ଜନ୍ମନ ॥

ଦ୍ୱାର ନିର୍ମାଣ ସମୟରେ, ଗୃହ ପ୍ରବେଶରେ, ବାର୍ଷିକ ଯଜ୍ଞାରମ୍ଭ, ସଙ୍କୀର୍ତ୍ତନାଦିରେ ଏବଂ ପୁତ୍ର ଜନ୍ମାଦି ଷଷ୍ଠୀ ଦେବୀ ପୂଜା ସମୟରେ ବାସ୍ତୁ-ପୂଜାକଲେ ଅତ୍ୟଧିକ ଶୁଭ ଫଳ ହେବ ।

## ଶଙ୍କ ଲକ୍ଷଣ

ଧବଳଶ୍ଚନ୍ଦନଂ ଚୈବ ଖଦିରଂ ସରଳଃଶମୀ ।
ସାଲକସ୍ତିନ୍ଦୁକ ଶ୍ଚୈତେ ଶଙ୍କୁ ବୃକ୍ଷାଃ ପ୍ରକୀର୍ତ୍ତିତାଃ ।

ଧବଳ ( ଧୋବା କାଷ୍ଠ ) ଚନ୍ଦନ, ଖଦିର, ସାରଳ, ଶର୍ମ ସାଲ-କେନ୍ଦୁ (କେଉଠ) ଏହି ବୃକ୍ଷନ୍ତି କାଷ୍ଠଆଣି ଶଙ୍କୁ କରାଯିବା ବିଧେୟ ।

ସୂଚ୍ୟଗ୍ର ସରଳଃ ଶଙ୍କୁଃ ପୃଥ୍ୱୀମଧ୍ୟେ ଧୃତଶିରଃ ।
ଅଧୋଽପିସ୍ୟା ତୀକ୍ଷ୍ଣମ୍ମୁଖୋ ନଦଘାତଂ ବୁଧୋଭୂବ ॥

ଶଙ୍କୁର ଅଗ୍ରଭାଗ ସୂଚ୍ୟଗ୍ରପରି ତୀକ୍ଷ୍ଣ ହୋଇଥିବ, ଶିର ପୃଥୁଳ ଅଧୋଭାଗ କ୍ରମାନ୍ୱୟେ ସୂକ୍ଷ୍ମହୋଇ ଆସିଥିବ ଏପରି ଶଙ୍କୁ ଭୂମିମଧ୍ୟରେ ରୋପଣ କରାଇବେ ।

ସପାଦ ଶଙ୍କୁ ବନ୍ଧନେ ରେଖାକୃତ୍ୟ ତଦଗ୍ରକୋଃ ।
ଚତୁଃ କୀଳନ୍ସ୍ମୃଷ୍ଟିସ୍ଥିର ଚୈବଂ ଶଙ୍କୁ ବିନର୍ଦ୍ଧିଶେତ୍ ॥

ଶଙ୍କୁର ପାଦାଗ୍ରସହିତ ବିମଳମାନଙ୍କ ସହ ସ୍ତମ୍ଭଗୁଡ଼ିକ ତାହାର ଅଗ୍ରଭାଗ ସୁଦ୍ଧା ଏକତ୍ର କରି ସମାନ ସ୍ଥିର କରିବ । ଏହିପରି ଶଙ୍କୁକଲେ ଗୃହକର୍ତ୍ତାର ମଙ୍ଗଳ ହୁଏ ।

ପାଦେ ନ ଶଙ୍କୁ ତୁଙ୍ଗସ୍ୟ ବ୍ୟାସାର୍ଦ୍ଧ କୃତ ମଣ୍ଡଳେ ।
ମଧ୍ୟେନିବେଶ୍ୟାନ୍ୟତର ଦିକ୍ ଚତୁଷ୍ପୃତଃ ସମମ୍ ॥

ଶଙ୍କୁର ଉଚ୍ଚ ପାଦେହେବ, ବିସ୍ତାର ଅର୍ଦ୍ଧପାଦେ ହେବ ଏହିପରି ଶଙ୍କୁ ମଣ୍ଡଳ ମଧ୍ୟରେ ନିବେଶିତ କରିବ ଅନ୍ୟ ଗୃହ-ଦିଗରେ ସେହିପରି ସମାନ କରିବ ।

ତତ୍‌ଶଙ୍କୁ ସ୍ତ୍ରିବିଧଂ କରିଷ୍ୟଥ ସମଂ ଚୋର୍ଦ୍ଧ୍ୱମଧ୍ୟାଦନା
ଅଷ୍ଟାସ୍ରଂ ଚତୁରସ୍ରନ୍ ବୃଶତ୍ରିକଂ ବ୍ରହ୍ମାସ୍ର ମେବଂ ବାମ୍ ।
ସବେଷାଂ ଚ ବୀଠସ୍ଥାନ ମଥବା ମୁଶ୍ୟେଷ୍ଟ ଲମ୍ବାଦିଭିଃ
ଗନ୍ଧାଦୈରଭି ସଂପୂଜ୍ୟଂ ଶୁଦ୍ଧଦିନେ ଶଙ୍କୁଂ ନ୍ୟସେନ୍ମଣ୍ଡଳେ ।

ସେହି ଶଙ୍କୁକୁ ସମାନକରି ଉର୍ଦ୍ଧ୍ୱାଦି ତିନି ପ୍ରକାର କରିବ । ତଦ-ଗ୍ରରେ ଅଷ୍ଟାସ୍ର ଚତୁରସ୍ର ବ୍ରହ୍ମାସ୍ର ନାମରେ ତିନଭାଗ କରିବ । ପୁନଶ୍ଚ

ସେହି ଶଙ୍କୁ ସଳଖ ଏବଂ ଛିଦ୍ର ବର୍ଜ୍ଜିତ ହେବା ଆବଶ୍ୟକ । ଶଙ୍କୁର ପରିମାଣ ଦ୍ୱାଦଶ ୧୨ ଅଙ୍ଗୁଳ ହେବ । ଏହି ନିୟମରେ ଶଙ୍କୁ କରି ସୁବର୍ଣ୍ଣାଦି ଧାତୁ ଦ୍ରବ୍ୟରେ ଭୂଷିତ କରାଇ ଗନ୍ଧ ପୁଷ୍ପ ଚନ୍ଦନାଦିସହ ପୂଜା କରାଇ ଶୁଭ ଦିନରେ ମଣ୍ଡଳରେ ସ୍ଥାପନ କରାଇବ ।

ବାପୀ କୂପ ତଡ଼ାଗ ସେତୁ ପରୀକ୍ଷା କୋଷ୍ଠୀଷୁଞ୍ଚେତ୍ରେ ରତଥା
ଏତେଷାମପି ବାହ୍ୟ ଦେଶ ନିକଟେ ସଦନ ଦେବାଳୟେ
ଭିତ୍ତିନାମପି ଗେହର୍ଦ୍ଧେ ଦେଶ ଗୃହାଙ୍ଗଣେ ସତ୍ୟ ପଶୁନାଂ ଗୃହେ
ଯାବତ୍କାଳ ଗୃହ ସ୍ଥିତଂ ଗୃହପତେ ସ୍ତାବାତ୍ ସଶଙ୍କୁସ୍ଥିତଃ

ବାପୀ କୂପ ତଡ଼ାଗ ସେତୁ ପରୀକ୍ଷାରେ ଭିତ୍ତିମାନଙ୍କରେ ବାହ୍ୟରେ ଭିତରେ ଦେବାଳୟରେ କାନ୍ଥମାନଙ୍କର ଉପର ଭାଗରେ ବାସ ଗୃହରେ ପଶୁଗୃହରେ ଶଙ୍କୁ ରଖିବା ଆବଶ୍ୟକ । ବିଶେଷତଃ ଗୃହକର୍ତ୍ତାର ଗୃହ ଯେତେଦିନ ପର୍ଯ୍ୟନ୍ତ ରହିବ ସେତେଦିନ ପର୍ଯ୍ୟନ୍ତ ସେହି ଗୃହରେ ଶଙ୍କୁ ରହିବାର ଶୁଭ ଲକ୍ଷଣ ଅଟେ ।

—ଅଙ୍ଗୁଷ୍ଟାଦି ପରିମାଣ—

ବାଳାଗ୍ର କଳିକା ଦର୍ଭଯୁଗ ସୂତ୍ର ପଦକମାତ୍
ଚତୁର୍ଗୁଣୀନ କ୍ରମେଣୈତାନ୍ୟଙ୍ଗୁଳଃ କଥ୍ୟନ୍ତିହ ।

ମୈଥୁନ ହୀନ ମାଈ ବାଛୁରୀର ଗୁଣ୍ଡିଏ ଲୋମରେ କଳିକା, ଚାରି କଳିକାରେ କୁଶାଗ୍ର, ଚାରି କୁଶାଗ୍ରରେ ଏକ ଯୁଗ, ଚାରି ଯୁଗରେ ଏକ ସୂତା ଚାରି ସୁତାରେ ଏକ ପାଦ ଚାରି ପାଦରେ ଏକ ଅଙ୍ଗୁଳ ହୁଏ ଗୃହକର୍ତ୍ତାର ଅଙ୍ଗୁଳ ଦ୍ୱାରା ମାପ କରିବା ଓ ତଦଭାବେ ବିଶ୍ୱ-କର୍ମାଙ୍ଗୁଳରେ ମଧ୍ୟ ମାପ କରାଯିବାର ଦେଖାଯାଏ ।

—:*:—

## ଶଙ୍କୁ ନିର୍ଣ୍ଣୟ

ଶିଳାତଳେଽମ୍ବୁସଂସିଦ୍ଧେ ବଜ୍ରଲେପନ ଚ ସମେ
ଇଷ୍ଟ ଶଙ୍କ୍ୱଙ୍ଗୁଳୈରିଷ୍ଟଂ ଶୁଭମଣ୍ଡଳ ମାଂ ଲିଖେତ୍

ଜଳରେ ପରଶୁଦ୍ଧ ଓ ବଜ୍ରଲେପ ଦ୍ୱାରା ଯେଉଁ ପଥର ସମାନ ଅଟେ ସେହି ପଥର ଉପରେ ଇଷ୍ଟଶଙ୍କୁର ଅଙ୍ଗୁଳମାନଙ୍କ ସମାନ ହୋଇଥିବା ଶୁଭମଣ୍ଡଳ ଲେଖିବ ।

ତନ୍ମଧ୍ୟେସ୍ଥାପୟେତ୍ ଶଙ୍କୁ ଦୈର୍ଘେଣ ଦ୍ୱାଦଶାଙ୍ଗୁଳଃ ।
ତଚ୍ଛାୟାପ୍ରସରେତ୍ ଯତ୍ର ବୃତ୍ତଂ ପୂର୍ବାପରାଗ୍ରୟୋଃ ॥

ବାରଅଙ୍ଗୁଳ ଦୀର୍ଘ ଯେଉଁ ଶଙ୍କୁ, ସେହି ମଣ୍ଡଳ ମଧ୍ୟରେ ସ୍ଥାପନ କରିବା ପରେ ସେହି ଶଙ୍କୁର ଅଗ୍ର ଛାୟା ଯେଉଁ ସ୍ଥାନକୁ ସ୍ପର୍ଶ କରିବ । ସେହିଠାରେ ପୂର୍ବ-ପଶ୍ଚିମ ଦୁହିଁଙ୍କର ବୃତ୍ତ କରିବ ।

ବିନ୍ଦୁ ଦ୍ୱୟଂ ଧାୟାସ୍ମିନ୍ ବୃତ୍ତେପୂର୍ବାପରାବଧି
ତନ୍ମଧ୍ୟେତମୀନୋରେଖା କର୍ତ୍ତବ୍ୟା ଦକ୍ଷିଣୋତ୍ତରା ॥

ଦୁଇଗୋଟି ବିନ୍ଦୁ ବିଧାନ ମଧ୍ୟରେ ପୂର୍ବପଶ୍ଚିମାବଧି ଯେଉଁ ବୃତ୍ତରେଖା ତାହାର ମଧ୍ୟଦେଇ ଦକ୍ଷିଣୋତ୍ତର କରି ଗୋଟିଏ ମତ୍ସ୍ୟ ରେଖା ଅଙ୍କନ କରିବ ।

ଯାମ୍ୟୋତ୍ତର ଦଶୋର୍ମଧ୍ୟେ ତିମିଜାପୂର୍ବ ପଶ୍ଚିମ ।
ତନ୍ମଧ୍ୟେ ମୀନ ସମ୍ବାଧ ଦିଦଶାନାଂ ତଥୈବଚ ॥

ଦକ୍ଷିଣୋତ୍ତର ଦୁଇଦିଗ ମଧ୍ୟବର୍ତ୍ତୀ ପୂର୍ବ ପଶ୍ଚିମାଂଶ ଦେଇ ଯେଉଁ ମତ୍ସ୍ୟ ରେଖା ଅଙ୍କନ କରିବ ସେହି ରେଖାମାନଙ୍କର ଦିଗ ଓ କୋଣ ସଂଶୋଧନ କରିବ ।

ଦିଗ୍ ପରୀକ୍ଷାଂ ପ୍ରବକ୍ଷ୍ୟାମି ସର୍ବ କାମାର୍ଥ ସିଦ୍ଧୟେ ।
ଶଙ୍କୁଂ କୃତ୍ୱା ଦୃଢା ଦୈର୍ଘ୍ୟ ସ୍ଥାପୟେତ୍ ସମଭୂତଳେ ॥

ଗୃହକର୍ତ୍ତାର ହିତ କାମନାର୍ଥେ ଦିଗ ପରୀକ୍ଷା କରିବାକୁ ହେଲେ ପ୍ରଥମେ ସମାନ ଭୂମି ଉପରେ ଶଙ୍କୁ ସ୍ଥାପନ କରିବ ।

ଶଙ୍କୁ ଦ୍ୱିଗୁଣ ମାନେନ ତନ୍ମଧ୍ୟେ ମଣ୍ଡଳଂ ଲିଖେତ୍ ।
ପୂର୍ବାପରଦିଶୋଚ୍ଛାୟା ଯାନେଗ୍ରଂ ମଣ୍ଡଳସ୍ୟଚ ॥

ଶଙ୍କୁର ଦୁଇ ଗୁଣ କରି ମଣ୍ଡଳ ସ୍ଥାପିବ । ଯେପରି କି ସେହି ମଣ୍ଡଳରୁ ଦୁଇ ଦିଗକୁ ପୂର୍ବ ପଶ୍ଚିମର ଛାୟା ସ୍ପର୍ଶ କରୁଥିବ ।

ତଦ୍ ବନ୍ଦ୍ୟବ୍ରୟଂ ସୂତ୍ରଂ ବିନ୍ୟସେତ୍ ପ୍ରକ୍ରଲୈତତଃ
ବନ୍ଦ୍ୟବ୍ରୟାନ୍ତରେ ଭ୍ରମ୍ୟାତ୍ ଶଙ୍ଖ୍ୟଂ ନନ ପୁଚ୍ଛକମ୍ ।
ଦକ୍ଷିଣୋତ୍ତରଗ ସୂତ୍ରମେବଂ ସୂତ୍ର ଦ୍ୱୟଂନ୍ୟସେତ୍ ॥

ସେହି ବନ୍ଦ୍ୟବ୍ରୟକୁ ଯେଉଁ ସୂତ୍ର ପ୍ରାପ୍ତ ହେଉଥିବ ତାହାକୁ ପୂର୍ବାପର କରି ବିନ୍ୟାସ କରିବ । ବନ୍ଦ୍ୟବ୍ରୟର ଆଦ୍ୟରେ ମତ୍ସ୍ୟର ମୁଖ ଓ ଶେଷରେ ପୁଚ୍ଛ କରିବ । ଆଉ ମଧ ଦକ୍ଷିଣୋତ୍ତର ପ୍ରାପ୍ତ ସୂତ୍ର ମଧ ଏହି ନିୟମରେ ନ୍ୟାସ କରିବ ।

ଉଦଗାଦି ପଗନ୍ତାନି ପର୍ଯ୍ୟନ୍ତାନି ବିନକ୍ଷିପେତ୍ ।
ସୂତ୍ରାଣି ତକ୍ଷକଃ କୃତ୍ୱା ଗୁଣୋତ୍ତରଂ ମୁଖଂ ତବୈ ।

ଶିଳ୍ପକାର ଉତ୍ତର ଦିଗରୁ ପରମଦିଗରେ ଗ୍ରହର ଉତ୍ତର ମୁଖକରି ସୂତ୍ର ନିକ୍ଷେପ କରିବ । ଏପରି କଲେ ଗୃହକର୍ତ୍ତାର ଧନଜନ ଯଶ, ଶ୍ରୀ ବର୍ଦ୍ଧିତ ହୁଏ । ସେହିଘର ମଧ ବହୁଦିନ ପର୍ଯ୍ୟନ୍ତ ସ୍ଥାୟୀ ହୁଏ ଏହା ପ୍ରାକ୍ ସିଦ୍ଧାନ୍ତ ଶିଳ୍ପକାରମାନଙ୍କର ସମ୍ମତ ଅଟେ ।

—ଃ୦ଃ—

## ଦ୍ୱିତୀୟ ପରିଚ୍ଛେଦ

—ବାସ୍ତୁ ଶୋଧନ ନିୟମ—

ଚତୁରସ୍ରୋଂ ସମଂ ଭୂମିଂ କୁର୍ଯ୍ୟାତ୍ତନ୍ନ କ୍ଷିପେତ୍ ତିଳଂ
ଯନ୍ ଯଦାଦ୍ରୁମାମେନ୍ତ ଗାବଂ ହିଗ୍ଗୁରପୟେତ୍ ଧ୍ରୁବଂ ।
ତାସାଂସୂତ୍ର ଶକ୍ରୁତ୍ ଫେନୈଃ ପୁଣ୍ୟ ଭବନ୍ତତତ୍ସ୍ଥଳମ୍ ।

ଯେଉଁ ବାସ୍ତୁରେ ଗୃହ ସ୍ଥାପନ କରିବ ସର୍ବ ପ୍ରଥମେ ସେହି ବାସ୍ତୁକୁ କର୍ଷଣ ( ଚୃଷ ) କରି ଚତୁରସ୍ର ଅର୍ଥାତ୍ ଚଉରସ କରିବ, ତହିଁରେ ତିଳ ବୁଣିବ ସେହି ତିଳ ଗୁଡ଼ିକ ଯେତେବେଳେ ଗଜା ଫୁଟି ବୃକ୍ଷଫାଳ ହିବ ସେତେବେଳେ ସେହି ଭୂମିରେ ଗୋରୁ ଚରାଇବ । ସେହି ଗୋରୁର ମଳ ମୂତ୍ର ପଡ଼ି ଉଛୁଳି ଫେଣ୍ଟାରିଆ ହୋଇ ଉଠିବ ତେବେ ସେହି ବାସ୍ତୁ ଶୁଦ୍ଧ ହେଲା ବୋଲି ଜାଣିବ ।

—ଭୂମିର ସ୍ୱାଦ୍ ବାରଣ—

କଷାୟା ବ୍ରହ୍ମଣୋଭୂମି ରମ୍ଳାକା କ୍ଷତ୍ରସ୍ୟ ବୈ
ତିକ୍ତା ବୈଶ୍ୟସ୍ୟ ପ୍ରଖ୍ୟାତ ମଧୁରଂ ଶୂଦ୍ରମେବଚ ॥

ବ୍ରାହ୍ମଣ ଜାତିର ମାଟି କଷା ଲାଗେ । କ୍ଷତ୍ରିୟ ଜାତି ମାଟି ଅମ୍ଳ (ଖଟା) ବୈଶ୍ୟ ଜାତି ମାଟି ପିତା ଶୂଦ୍ର ଜାତି ମାଟି ମଧୁର ଲାଗିବାର ପ୍ରମାଣ ଅଛି ।

—ଭୂମିର ବର୍ଣ୍ଣ—

ବ୍ରହ୍ମ କ୍ଷତ୍ରସ୍ଥ ବଟ୍ ଶୂଦ୍ରାଃ ଶୁଦ୍ଧା ରକ୍ତାଦି ପୀତମା
କୃଷ୍ଣବର୍ଣ୍ଣେ ଶୁକ୍ଳତବ୍ୟା ଜାତସ୍ତୁ କ୍ରମଶୋସ୍ତଥା ।

ଶୁକ୍ଳ ବର୍ଣ୍ଣ ମାଟି ବ୍ରାହ୍ମଣ ଜାତି ରକ୍ତବର୍ଣ୍ଣ ମାଟି କ୍ଷତ୍ରିୟ ଜାତି ପୀତ (ହଳଦିଆ) ବର୍ଣ୍ଣମାଟି ବୈଶ୍ୟ ଜାତି କୃଷ୍ଣବର୍ଣ୍ଣ ମାଟି ଶୂଦ୍ର ଜାତି ଅଟେ ।

—ଭୂମିର ଗନ୍ଧ ନିର୍ଣ୍ଣୟ—

ଘୃତ ଗନ୍ଧା ଦ୍ଭବେତ୍ ବ୍ରହ୍ମ ରକ୍ତ ଗନ୍ଧାପି ବାହୁଜା
କ୍ଷୀର ଗନ୍ଧା ଦ୍ଭବେତ୍ ବୈଶ୍ୟ ଶୂଦ୍ର ବିଷ୍ଠାନ୍ନ ଗନ୍ଧତା

ଘୃତପରି ସୁବାସ ହେଉଥିବା ମାଟି ବ୍ରାହ୍ମଣ ଜାତି ରକ୍ତ ପରି ବାସୁଥିବା ମାଟି କ୍ଷତ୍ରିୟ ଜାତି ଓ କ୍ଷୀର ପରି ବାସୁଥିବା ମାଟି ବୈଶ୍ୟ ଜାତି ବୋଲି ନିର୍ଣ୍ଣୟ କରାଯାଇଅଛି । ଆଉ ଯେଉଁ ମାଟି ବିଷ୍ଠା ପରି ଦୁର୍ଗନ୍ଧ ହୁଏ ତାକୁ ଶୂଦ୍ର ଜାତି ମାଟି ବୋଲି ମୁନିମାନେ କହିଛନ୍ତି । ଏହାଛଡ଼ା ତଳ ଭୂମିର ଦ୍ୱାରା ଜାତିନିର୍ଣ୍ଣୟ କରିବାର ବିଧାନ ମଧ୍ୟ ରହିଅଛି, ସାବିତ୍ରୀ ମନ୍ତ୍ରର ଜଳ ବୁଣିବ ।

**ତଳଦ୍ୱାରା ଜାତି ନିର୍ଣ୍ଣୟ**

ଭୂମୌତଳାନ୍ ବକାଟେତ ବୃଷଦ୍ଧୁଷ୍ଟାଥ ନିର୍ଣ୍ଣୟଃ
ତ୍ରିଗତ୍ରିଷୁଦ୍ଭବେତ୍ ପତ ବ୍ରହ୍ମଭୂମି ପ୍ରକୀର୍ତ୍ତିତ ॥
ଷଡ୍ଦୀଶାଂପଞ୍ଚଗର୍ବୀଷୁ ବୈଶ୍ୟେବୈ ସପ୍ତଭର୍ଦି ନୈଃ ।
**ନବସ୍ୱର୍ଦ୍ଦୀଷ ଶୂଦ୍ରାୟାଂ ଏବଂ ଭୂମିଃ ପ୍ରକୀର୍ତ୍ତିତଃ ॥**

ସର୍ବପ୍ରଥମେ ଭୂମିକୁ କର୍ଷଣ କଲାପରେ ମାଷ (ଡାଲି) ବୁଣିବ ସେହି ଖସାଗୁଡ଼ିକ ତିନି ଦିନରେ ଗଜା ଅଙ୍କୁରିଲେ ସେ ମାଟିକୁ ବ୍ରହ୍ମଜାତି ମାଟି ବୋଲି ଜାଣିବ । କ୍ଷତ୍ରିୟ ଜାତି ମାଟି ୫ ଦିନରେ ଓ ବୈଶ୍ୟ ମାଟି ନଅଦିନ କିମ୍ବା ତଦୂର୍ଦ୍ଧ୍ୱରେ ଗଛ ଉଠଇ ।

ବ୍ରହ୍ମଜାତିଂ ଯଦା ଭୂମି କ୍ଷତ୍ରିୟୋ ଯଦି ଇଚ୍ଛତି ।
ସର୍ବଥାନିଧନଂ ଜାତି ଶୈଳାବଜ୍ର ହତା ଇବ ॥

ବ୍ରାହ୍ମଣ ଜାତି ଭୂମି ର କ୍ଷତ୍ରୀୟ କିମ୍ବା ଅନ୍ୟ ଜାତି ଯଦି ଇଚ୍ଛା କରି ଗୃହ ନିର୍ମାଣ କରନ୍ତି ତେବେ ସେ ଗୃହ ବଜ୍ରଦ୍ୱାରା ନଷ୍ଟହୁଏ ।

ସ୍ୱଜାତ । ସୁଖମାପ୍ନୋତି ବ୍ରାହ୍ମଣସ୍ୟ ଚତୁର୍ଭୂମିଃ
କ୍ଷତ୍ରିୟାଣାଂ ତ୍ରିଭୂମିସ୍ୟାତ୍ ବୈଶ୍ୟସ୍ତୁ ଦ୍ୱୟଭୂମିତଃ
ଶୁଦ୍ରାଣାମେବ ଭୂମିଶ୍ଚ ଚତୁର୍ଜାତି ବଧିଯୁତେ

ନିଜ ଜାତି ବାସ୍ତୁ ଗୃହ କରିବା ଉଚିତ । ତେବେ ସେ ଗୃହ କର୍ତ୍ତା ଧନଜନ ସମ୍ପନ୍ନ ହୋଇ ଆନନ୍ଦରେ କାଳ ଯାପନ କରେ । ଏହା ଛଡ଼ା ବିପ୍ର ସବୁଜାତି ଭୂମିରେ ବାସଗୃହ କରିପାରେ କ୍ଷତ୍ରିୟ ନିଜ ଜାତି ଓ ବୈଶ୍ୟ, ଶୂଦ୍ର ଜାତିରେ; ବୈଶ୍ୟମାନେ ବୈଶ୍ୟ ଓ ଶୂଦ୍ରଜାତିରେ ଆଉ ଶୂଦ୍ରମାନେ କେବଳ ଶୂଦ୍ର ଜାତିରେ ରହିବାର ବିହିତ ଅର୍ଥାତ୍ ନୀଚଜାତିମାନଙ୍କର ଉଚ୍ଚ ଜାତି ଭୂମିରେ ରହିବାର ନିଷେଧ ଅଛି । ଯଦି ନୀଚଜାତି ହୋଇ ନିଜ ଉଚ୍ଚଜାତି ଭୂମିରେ ବାସଗୃହ କରନ୍ତି ତେବେ ସେ ଗୃହକର୍ତ୍ତା ଅଳ୍ପଦିନ ମଧ୍ୟରେ ମୃତ୍ୟୁ ପ୍ରାପ୍ତହୁଏ କିମ୍ବା ତାହାର ବଂଶସମୂହ ଅଳ୍ପଦିନରେ ନିପାତ ହୁଅନ୍ତି ଏବଂ ସେ ଗୃହ ସବଂଶ ନାଶ କଲାପରେ ଭଗ୍ନାବସ୍ଥା ପ୍ରାପ୍ତ ହୁଏ ।

ବର୍ଣ୍ଣଗନ୍ଧ ରସାଯାଦି ନଶ୍ୟନ୍ତି ନଚତେତଲାଃ
ତଥୈବନ ପ୍ରରୋହନ୍ତି ଗୋଳଭୂମି ବିନିର୍ଦ୍ଦିଶେତ୍
ଯଦିତାନି ତଦାଭୂମ୍ୟାଂ ମାନବଃ କୁରୁତେ ଗୃହଂ
ସତତଂ ମୃତ୍ୟୁ ମାପ୍ନୋତି ଲୁଳାବାଗି ଚଦାନଳଃ ।

ଯେଉଁ ଭୂମିର ବର୍ଣ୍ଣ ବାରି ହୁଏ ନାହିଁ ରସ କମ୍ବା ଗନ୍ଧ ବାରି ହୁଏନାହିଁ ତଳ ବୁଣିଲେ ଗଛ ହୁଏ ନାହିଁ ଏପରି ଦେଖିଲେ ସେ ଭୂମିକୁ ଗୋଳ ଭୂମିବୋଲି ଜ୍ଞାନ କରିବ । ଯଦ୍ଦି କେହି ବ୍ୟକ୍ତି ସେପରି ଭୂମିରେ ଗୃହ କରନ୍ତି ତେବେ ଭୂନା ରାଶିରେ ଅଗ୍ନି ପକାଇଲା ପରି ତାହାର ବଂଶ ସମୂଳେ ଧ୍ୱଂସହୁଏ । ତେଣୁ ସେପରି ଭୂମିକୁ ଦୂରନ୍ତୁ ନମସ୍କାର କରିବ ।

## ଭୂମି ଶୁଦ୍ଧି

ତିଳାନାଂ କୃଷ ସଂଦୋହ ଫଳଂ ପୁଷ୍ପଂ ସାମଚରେତ୍
ତଦ୍‌ଗୋଗୋଷ୍ଠେ ନିକ୍ଷେପ ଭୂମିଶୁଦ୍ଧି ପ୍ରକଥ୍ୟତେ ।

ଭୂମି କର୍ଷଣ କରି ତଳ ବୁଣିଲା ପରେ ସେନେବେଳେ ସେହି ତିଳଗୁଡ଼ିକ ଗଛ ହୋଇ ଫୁଲ ଫଳିବ ସେତେବେଳେ ସେ ସ୍ଥାନକୁ ଗୋରୁଗୋଠ ଗୋଡ଼ାଇ ଆଣି ସେ ଭୂମିକୁ ଶୋଧନ କରାଇବ ।

କାଷ୍ଠାଙ୍ଗାର ତୁଷାସ୍ଥିନି ହଳାଗ୍ରେ ଯଦି ଦୃଶ୍ୟତେ
ଧାନ୍ୟଶଙ୍ଖ ଶିଳାହେମ ବଦେଷ ବାସ୍ତୁ ଶୁଭାଶୁଭଂ ।

ଭୂମିକୁ ଗୃଷ କରିବାବେଳେ ଲଙ୍ଗଳ ମୁନରେ ମାଟି ଖୋଳା ହୋଇ ଯଦି କାଷ୍ଠ, ଅଙ୍ଗାର, ତଷ, ଅସ୍ଥି, ଧାନ୍ୟ, ଶଙ୍ଖ, ପଥର କମ୍ବା ଇଟା ଦେଖାଯାଏ ତାହାର କି ଶୁଭାଶୁଭ ଫଳ ହୁଏ ତାହାକହିବା

କାଷ୍ଠେନାଗ୍ନି ର୍ଭୟଂ ବିଦ୍ୟା ଦଙ୍ଗାରେ ରୋଗ ପୀଡ଼ନଂ
ତୁଷେଣାଂ ଦ୍ରବ୍ୟହାନିଃ ସ୍ୟା ଦସ୍ଥିନି ଚ କୁଳକ୍ଷୟଃ ।
ଧାନ୍ୟେତ ଧନଲାଭ ସ୍ୟାତ୍ ଶଙ୍ଖାତ୍ତ୍ୟାପ୍ତି ବିବର୍ଦ୍ଧନ ।
ପାଷାଣେ ସର୍ବକଲ୍ୟାଣ ମିଷ୍ଟକେତ ଧନାଗମଃ ।

ଭୂମି ଗୃଷ ସମୟେ କାଷ୍ଠ ବାହାରିଲେ ଅଗ୍ନି ଭୟହୁଏ,ଅଙ୍ଗାର ବାହାରିଲେ ଗୃହ କର୍ତ୍ତାର ପୀଡ଼ା ଜନ୍ମେ, ତଷ ବାହାରିଲେ ଗୃହର ଅର୍ଜିତ ଧନ ନଷ୍ଟ ହୁଏ । ଅସ୍ଥି ବାହାରିଲେ ବଂଶ ନାଶ ଘଟେ, ତାହାହେଲେ ଆଦୌ ସେ ସ୍ଥାନରେ ଗୃହ ନିର୍ମାଣ କରିବ ନାହିଁ ।

ଧାନ୍ୟ ବାହାରିଲେ ଧନ ଲାଭ ହୁଏ ଶଙ୍ଖ ବାହାରିଲେ ପରମାୟୁ ବୃଦ୍ଧି କରାଏ । ପଥର ବାହାରିଲେ ମଙ୍ଗଳ କାର୍ଯ୍ୟ ଅଳ୍ପଦିନ ମଧ୍ୟରେ କରାଏ ଇଟା ବାହାରିଲେ ଧନ ଲାଭ ହେବାର ପ୍ରମାଣ ଅଛି ।

—ଭୂମିର ଶୁଭାଶୁଭ ନିର୍ଣ୍ଣୟ—

ସ୍ନିଗ୍ଧାସ୍ନିଗ୍ଧା ସୁରଭି ସୁକୁଳତା ସୁଗନ୍ଧା
ଶସ୍ତା ପ୍ରଦକ୍ଷିଣ ଜଳାଚ ନିବାସ ଭୂମିଃ ।
ନେଷ୍ଟା ବିପର୍ଯ୍ୟୟ ଗୁଣା କଚ କକରାସ୍ଥି
ବଲ୍ମୀକ କଣ୍ଟକ ବିଖାତକ ସଙ୍କୁଳାଚ ।

ସୁଶୋଭିତ ସୌରଭ ଯୁକ୍ତ ବୃକ୍ଷ ଲତାରେ ଯେ ଭୂମି ଶୋଭା ପାଉଥାଏ, ଗୃହପାଖେ ଜଳପୂର୍ଣ୍ଣ ହୋଇଥାଏ ସେପରି ଭୂମିକୁ କେବେ ହେଲେ ନିନ୍ଦା କରିବ ନାହିଁ । ସେ ଭୂମି ଅତି ମଙ୍ଗଳ ଦାୟକ, ଯେଉଁ ଭୂମିରେ କେଶ, ଖପର, ଉଇହୁଙ୍କା, କଣ୍ଟାବଣ ଦେଖାଯାଏ ସେପରି ଭୂମିରେ କେବେହେଲେ ଗୃହ କରିବ ନାହିଁ । କଲେ ଅନେକ ଘଟିବା ସୁନିଶ୍ଚିତ ।

—ବାସ୍ତୁ ନିକଟସ୍ଥ ଜଳ ଲକ୍ଷଣ—

ପ୍ରାକସ୍ଥିତେ ସଲିଳେ ଚୈବ ପୁତ୍ରହାନି ର୍ନସଂଶୟଃ
ଆଗ୍ନେୟେଗ୍ନି ଭୟଂଖ୍ୟାତଂ ଶତ୍ରୁ ଭୀତିଶ୍ଚ ଦକ୍ଷିଣେ ।
ନୈର୍ଋତେ ନାରୀ ଦୁଃଖାସ୍ୟାତ୍ ପଶ୍ଚିମେଚ ତଥୈବଚ
ବାୟବ୍ୟେ ଧନହାନିଃ ସ୍ୟାତ୍ ଐଶାନ୍ୟେ ଚୋତ୍ତରେ ଶୁଭେ

ବାସ୍ତୁର ପୂର୍ବଦିଗରେ ଜଳାଶୟ ଥିଲେ ପୁତ୍ରହାନି ହୁଏ । ଅଗ୍ନି କୋଣରେ ଥିଲେ ଅଗ୍ନିଭୟ ଓ ଦକ୍ଷିଣ ଦିଗରେ ଶତ୍ରୁଭୟ କରାଏ । ନୈର୍ଋତ କୋଣରେ ଜଳାଶୟ ରହିଲେ ନାରୀ ଦୁଷ୍ଟଚରିତ୍ରା ହୁଏ । ପଶ୍ଚିମରେ ମଧ୍ୟ ନାରୀ ଚରିତ୍ର ଅସ୍ୱାଭାବିକ ହୁଅନ୍ତି ବାୟବ୍ୟ କୋଣରେ ଧନ ନାଶ କରାଏ । ଉତ୍ତର ଦିଗ କିମ୍ବା ଐଶାନ୍ୟ କୋଣରେ ଜଳାଶୟ ରହିବା ଅତି ଶୁଭପ୍ରଦ ।

* ଗୃହପାର୍ଶ୍ୱସ୍ଥ ବୃକ୍ଷର ଶୁଭାଶୁଭ ଫଳ *

ଯତ୍ରୈତେ ସ୍ଥିତବୃକ୍ଷା ବିଲ୍ୱ ଦାଡ଼ିମ୍ବ କେଶରାଃ
ପନସା ନାରିକେଳାଶ୍ଚ ଶୁଭଂ କୁର୍ବନ୍ତି ନିତ୍ୟଶଃ
ଲବଙ୍ଗ ନାଗରମ୍ରଂ ଚ ଶିରୀଷାମଳ ଚମ୍ପକାଃ
ବକୁଳାସ୍ତ୍ରଖରଶେ କରମ୍ବାଶ୍ଚ ମଧୂରାଶୁଭାଃ
ଯମ୍ବୀରପାଟଳା ଯୁଗା ମଲ୍ଲୀଜାତିଶ୍ଚ କେତକୀ
ସର୍ବେଜଂ ଶତପତ୍ରଂଚ ପ୍ରଯୁଚ୍ଛନ୍ତି ସଦା ଶୁଭଂ ।

ବାସ୍ତୁର ଯେଉଁ ଦିଗରେ ଦେଉ ଯହିଁର ବିଲ୍ୱ, ଡାଳିମ୍ବ, କେଶର ପଣସ ନଡ଼ିଆ ଆଦି ବୃକ୍ଷ ଆଉ ଲବଙ୍ଗ ନାରଙ୍ଗ ଶିରୀଷ ଆମ୍ବ ଅଁଳା, ଚମ୍ପା ଅଶୋକ ତଗର ବକୁଳ ଅମୃତଭଣ୍ଡା ଏହି ଫଳ ଓ ପୁଷ୍ପ ବୃକ୍ଷମାନେ ରହିଥାନ୍ତି କମ୍ବା ଜମ୍ବୀର ପାଟଳୀ ଗୁବାକ, ମଲ୍ଲୀ ଜାତିକେତକୀ ବୃକ୍ଷମାନେ ଦେଖାଯାନ୍ତି ତେବେ ସେ ଗୃହ କର୍ତ୍ତାର ଅତିଶୁଭଫଳ ଘଟେ ।

ନିଶାମଳା ଫଲିଶସ୍ତୁ ନ୍ୟଗ୍ରୋଧା ଶ୍ୱେତାଽପରାଜିତା ।
କୋବିଦ ଚଃ କପିତ୍ଥଂଚ ହ୍ୱଶ୍ମତସ୍ୟ ପଦେପଦେ
ଅଶ୍ୱକନ୍ଦଃ କଦମ୍ବଶ୍ଚ କଦଳୀ ବୀଜପୂରକଃ
ଗୃହେ ଯସ୍ୟ ପ୍ରରୋହନ୍ତି ସଗୃହୀ ନ ପ୍ରବର୍ଦ୍ଧତେ

ମାଳବୃକ୍ଷ ପଳସ ତେନ୍ତୁଳି ଧୋବ ଅପରାଜିତା କାଞ୍ଚନ କପିତ୍ଥ ଏହି ବୃକ୍ଷମାନେ ଗୃହ ବାଡ଼ିରେ ଥିଲେ ଗୃହ କର୍ତ୍ତାର ଶୁଭଫଳ ହୁଏ ନାହିଁ । କଦମ୍ବ ଅଶ୍ୱନ୍ଦ ବୀଜପୂର୍ଣ୍ଣ କଦଳୀ ଝୋଟଗଛ ଏମାନେ ଗୃହ ବାଡ଼ିରେ ରହିଲେ ମଧ୍ୟ ଅମଙ୍ଗଳ ହୁଏ ।

ମାଳତୀଂ ମଲ୍ଲୀକାଂ ମୋଚ୍ଛ ନବଜ୍ଞଂ କୁନ୍ଦମେବଚ
ଯୋଗୃହେରୂପଯେତ୍ୟେବ ତସ୍ୟ ଶାସ୍ତ୍ରେ ବଧୋଭବେତ୍

ବନ ମଲ୍ଲୀ, ମାଳତୀ, ଜଜାଙ୍ଗୀ, କୁନ୍ଦ, ଶତଦଳ ମଲ୍ଲୀ ଏହି ବୃକ୍ଷମାନେ ଗୃହ ବାଡ଼ିରେ ରହିଥିଲେ ଗୃହକର୍ତ୍ତାର ଅସ୍ତ୍ରାଘାତ ଯୋଗ ଘଟିବାର ଜଣାଯାଏ ।

ନମ୍ବ ଏରଣ୍ଡୋ ଧ୍ରୁ ସୁରା ଲଶୂନୋ ଲକୁଚ ସ୍ତୁବଃ
ଖଦିରଶ୍ଵତ୍ଥ ଖର୍ଜୁରା ଧନଧାନ୍ୟ କ୍ଷୟାବହଃ

ନମ୍ବ ଜଡ଼ା ଦୁଦୁରା ଲଶୁନ ଯେଉଁ ଶିଶୁ ଖଇର ଅଶ୍ଵତ୍ଥ ବୃକ୍ଷମାନେ ଅନଷ୍ଟ କାରକ, ଗୃହ କର୍ତ୍ତାର ବାଡ଼ିରେ ଏ ବୃକ୍ଷମାନ ରହିଲେ ଧନଧାନ୍ୟ କ୍ଷୟ କରାଏ ।

ବର୍ଜୟେତ୍ ପୂର୍ବତୋଽଶ୍ଵତ୍ଥଂ ଦକ୍ଷିଣେଚ ପଲାଶକଂ
ନ୍ୟଗ୍ରୋଧଃ ପଶ୍ଚିମଦିଶି ଚୈତ୍ତରେଚ୍ଛୁଦ୍ୟ ଦୁମ୍ବରମ୍
ଐଶାନ୍ୟେ ରକ୍ତପୁଷ୍ପଂବୈ ଝାଗ୍ନେୟେକ୍ଷୀରଣୀସ୍ତଥା
ନୈର୍ଋତେ କଣ୍ଟକଂଚୈବ ବାୟବ୍ୟେଚୈବଶାଲ୍ମଳୀ

ପୂର୍ବ ଦିଗରେ ଅଶ୍ଵତ୍ଥବୃକ୍ଷ, ଦକ୍ଷିଣଦିଗେ ପଳାଶ ଉତ୍ତର- ଦିଗେ ଔଦୁମ୍ବର ପଶ୍ଚିମଦିଗେ ବଟ ଈଶାନ୍ୟକୋଣେ ମନ୍ଦାର ଆଦି ରକ୍ତପୁଷ୍ପ ବୃକ୍ଷ, ଆଗ୍ନେୟକୋଣେ କ୍ଷୀରଣି, ନୈର୍ଋତେ କଣ୍ଟକ ବୃକ୍ଷ ବାୟବ୍ୟ କୋଣେ ଶାଲ୍ମଳୀ ବୃକ୍ଷ ରହିଲେ ଗୃହକର୍ତ୍ତାର ମଙ୍ଗଳ ହୁଏ ନାହିଁ । ଏଣୁ ଏ ବୃକ୍ଷମାନ ଏହି ଦିଗମାନଙ୍କରେ ଥିଲେ ଆଗେ ଛେଦନ କରି ପଛେ ଗୃହ ନିର୍ମାଣ କରିବ । ଛେଦନ ନକରି ଗୃହ କଲେ ନିମ୍ନୋକ୍ତ ଫଳମାନ ଘଟେ ।

ଅଶ୍ଵତ୍ଥେ ଚୈବଦାରିଦ୍ର୍ୟଂ ବିୟୋଗସ୍ତୁ ପଲାଶକେ
ନ୍ୟଗ୍ରୋଧେ କଳହଶ୍ଚୈବ ମୃତ୍ୟୁର୍ବୈ ମୁଦୁମ୍ବରେ
ରକ୍ତପୁଷ୍ପେ ଝଗ୍ନିଭୟଂ ରାଜଭୟଶ୍ଚଖୀରଣୀ
ରିପୁଭୟଂ କଣ୍ଟକେଚ ଶାଲ୍ମଲ୍ୟାଂ ଶବ୍ଦଭନ୍ଦିତା

ପୂର୍ବ ଦିଗରେ ଅଶ୍ଵତ୍ଥ ବୃକ୍ଷ ରହିଲେ ଗୃହକର୍ତ୍ତା ଦାରିଦ୍ର୍ୟ ଦକ୍ଷିଣ ଦିଗରେ ପଳାଶ ଥିଲେ ବିପଦ ପୂର୍ଣ୍ଣ, ପଶ୍ଚିମରେ ବଟ ଥିଲେ କଳହ, ଉତ୍ତରରେ ଉଦୁମ୍ବର ଥିଲେ ମୃତ୍ୟୁ, ଐଶାନ୍ୟ କୋଣରେ ରକ୍ତପୁଷ୍ପ ବୃକ୍ଷଥିଲେ ଅଗ୍ନିଭୟ ଅଗ୍ନିକୋଣରେ କ୍ଷୀର ଗଛଥିଲେ ରାଜଭୟ ହୁଏଭ ନୈର୍ଋତ କୋଣରେ ଯେ କୌଣସି କଣ୍ଟକ ବୃକ୍ଷ ଥିଲେ ଓ ବାୟବ୍ୟ କୋଣ ଶାଲ୍ମଳୀ ବୃକ୍ଷଥିଲେ

ଗୃହକର୍ତ୍ତାର ସଦାସର୍ବଦା ଶତ୍ରୁଭୟ ଲଗି ରହିଥାଏ । ଏଣୁ ଏ ବୃକ୍ଷମାନଙ୍କୁ ଛେଦନ କରିସାରି ଗୃହକରିବା ବିଧେୟ ।

ଗୃହର ନିଷେଧ ସ୍ଥାନ

ବଲ୍ମୀକେଚ ଗେହକର୍ତ୍ତୁ ଷ୍ଟାପଦୋକଥୟନ୍ତିହି
ଗର୍ତ୍ତେଚୈବ ବିତ୍ତନାଶେ ଧ୍ରୁବଂରୋଗୀ ଭବେନ୍ନରଃ

ଉଇ ଢିଙ୍କା ନିକଟରେ ଗୃହ କରିବା ଉଚିତ ନୁହେଁ । କଲେ ବହୁବିଧ ବିପଦର ସମ୍ମୁଖୀନ ହୁଅନ୍ତି । ଆଉ ମଧ୍ଯ ଗର୍ତ୍ତ ନିକଟରେ ଗୃହକଲେ ଧନ ନାଶହୁଏ ।

ସଚିବାନ୍ତି କେହ୍ୟର୍ଥନାଶେ ଧୂର୍ତ୍ତସ୍ଥୁ ପୁତ୍ରପୀଡ଼କଃ
ଚତୁଷ୍ପଥେହ୍ୟ କୀର୍ତ୍ତିଃସ୍ୟାଦ୍ଵିତ ଜାନିହ୍ଵହେବୁଧାଃ

ମନ୍ତ୍ରୀ ଗୃହ ନିକଟରେ ଗୃହ କରିବ ନାହିଁ କଲେ ଧନ ନଷ୍ଟହୁଏ ଦୁଷ୍ଟ ଚରିତ୍ର ଲୋକମାନଙ୍କ ଗୃହ ନିକଟରେ ଗୃହ କଲେ ପୁତ୍ରନାଶ ଓ ବିପଦ ଗ୍ରସ୍ତ ହୁଏ । ଚତୁଷ୍ପଦ ସ୍ଥାନମାନଙ୍କ ନିକଟରେ ଗୃହକଲେ କୀର୍ତ୍ତି ନଷ୍ଟ ହେବାର ସମ୍ଭାବନା ।

ନକାରୟେତ୍ ଦ୍ଵାଜମାର୍ଗେ ତଥାଦେବ କୁଳାନ୍ତିକେ
ଗୋକୁଳେ ଶିଲ୍ପୀନାଂପାର୍ଶ୍ଵେ ରଜକାନାଂ ବିଶେଷତଃ

ରାଜପଥରେ ବଟ ଅଶ୍ଵତ୍ଥ ବୃକ୍ଷ ନିକଟରେ ଗୋରୁ ଗୁହାଳ ଜମିମାନଙ୍କରେ ଶିଳ୍ପୀକାରଙ୍କ ଘର ପାଖରେ ଧୋବାଘର ନିକଟରେ ବାସ କରିବ ନାହିଁ ।

## ଦିଗ ବର୍ଦ୍ଧି ବା ଫଳାଫଳ

ପୂର୍ବପ୍ଲବୋ ବୃଦ୍ଧିକରଃ ଧନଦଶ୍ଚୋତ୍ତରପ୍ଲବଃ
ଦକ୍ଷିଣେ ଚ ଭବେନ୍ମୃତ୍ୟୁ ଧନହାନିସ୍ତୁ ପଶ୍ଚିମେ

ପୂର୍ବ ଦିଗକୁ ମାଡ଼ି ଗୃହକଲେ ଗୃହକର୍ତ୍ତା ସମୃଦ୍ଧିଶାଳୀ ହୁଅନ୍ତି । ହୁଅନ୍ତି । ଉତ୍ତର ଦିଗକୁ ମଡ଼ାଇ ଗୃହ ବୃଦ୍ଧି କଲେ ମଧ୍ଯ ତଦ୍ରୂପ ଧନ ଲାଭହୁଏ । ଦକ୍ଷିଣକୁ ବୃଦ୍ଧିକଲେ ଅପମୃତ୍ୟୁ ଓ ପଶ୍ଚିମ ଦିଗକୁ ମାଡ଼ି ଗୃହକଲେ ଧନହାନି ହୁଏ । ଏଣୁ ଦକ୍ଷିଣ ପଶ୍ଚିମକୁ ମଡ଼ାଇ ଗୃହ କରିବା ନିଷେଧ ।

## ଷୋଡ଼ଶ ବାସ୍ତୁର ନାମ ଓ ଲକ୍ଷଣ

ଆୟତଂ ଚତୁରସ୍ରଂଚ ବୃତ୍ତଂ ଭଦ୍ରାସନଂ ତଥା
ଚକ୍ରଂ ବିଷମ ବାହୁସ୍ୟାତ୍ ତ୍ରିକୋଣଂ ଶକଟାକୃତିଃ
ଚଣ୍ଡଂ ପ୍ରବଣ ଗୃପୌଚ ମୁରଜଂଚ ବୃହନ୍ମୁଖଂ
ବ୍ୟଜନଂ କୂର୍ମକଂ ସୂର୍ଯ୍ୟମିତ୍ତ ଷୋଡ଼ଶଂ ବାସ୍ତୁନ ।

୧ ଆୟତ ୨ ଚତୁରସ୍ର ୩ ବୃତ୍ତ ୪ ଭଦ୍ରାସନ ୫ ଚକ୍ର ୬ ବିଷମ-ବାହୁ ୭ ତ୍ରିକୋଣ ୮ ଶକଟାକୃତି ୯ ଦଣ୍ଡ ୧୦ ପ୍ରବଣ ୧୧ ଧନୁ ୧୨ ମୃଦଙ୍ଗାକାର ୧୩ ବୃହନ୍ମୁଖ ୧୪ ବ୍ୟଜନ ୧୫ କୂର୍ମକ ୧୬ ସୂର୍ଯ୍ୟ ଏହିମାନେ ଷୋଡ଼ଶ ବାସ୍ତୁ ପୁରୁଷ ଅଟନ୍ତି ।

ଆୟତେ ସିଦ୍ଧଏତ ସର୍ବଂ ଚତୁରସ୍ରେ ଧନାଗମଃ
ଭଦ୍ରାସନେ ଭଦ୍ରତ୍ୱଂଚ ବୃତ୍ତେଧନ ବିବର୍ଦ୍ଧନଂ
ଚକ୍ରେ ଦାରିଦ୍ର୍ୟ ମାପ୍ନୋତି ଦୁଃଖ ବିଷମବାହୁକେ
ନୃପଭୟଂ ତ୍ରିକୋଣସ୍ୟାତ୍ ଶକଟେଚ ଧନକ୍ଷୟଃ
ନଶ୍ୟନ୍ତି ପ୍ରାଣୀନୋଦଣ୍ଡେ ପ୍ରଣବେ ଲୋଚନକ୍ଷିତିଃ
ମୁରଜେ ଭାର୍ଯ୍ୟାନାଶସ୍ୟାତ୍ ଧନନାଶେ ବୃହନ୍ମୁଖେଂ
ବ୍ୟଜନେ ବନ୍ଧୁ ନାଶଶ୍ଚ କର୍ମେଚ ରୋଗ ପୀଡ଼ନଂ
ଧନୁଷେଚୈର ଭୟଂକୁର୍ଯ୍ୟାତ ସୂର୍ଯ୍ୟେଣାପି ଧନକ୍ଷୟଃ

ଆୟତନରେ ଗୃହକଲେ କାର୍ଯ୍ୟ ସିଦ୍ଧି ହୁଏ । ଭଦ୍ରାସନରେ ଭଦ୍ରତା ପ୍ରାପ୍ତି ହୁଅନ୍ତି । ବୃତ୍ତ ଭୂମିରେ ଗୃହକଲେ ଗୃହକର୍ତ୍ତା ଯଶସ୍ୱୀ ହୁଏ । ଚକ୍ରରେ ଗୃହ କର୍ତ୍ତାକୁ ଦରିଦ୍ର କରାଏ ବିଷମ ବାହୁରେ ଦୁଃଖ ଜନ୍ମାଏ । ତ୍ରିକୋଣରେ ରାଜଭୟ ଶକଟରେ ଗୃହକଲେ ଧନ କ୍ଷୟ ହୁଅଇ । ଦଣ୍ଡରେ ଗୃହକଲେ ଗୃହପାଳିତ ପଶୁଆଦି ବିନଷ୍ଟ ହୁଅନ୍ତି । ପ୍ରଣବରେ ଗୃହକଲେ ନେତ୍ରରୋଗ ଜନ୍ମେ । ମୁରଜାକୃତିରେ ସ୍ତ୍ରୀ ବିନଷ୍ଟ ଯୋଗ ଘଟେ । ବୃହନ୍ମୁଖ ଓ ବ୍ୟଜନରେ ଧନହାନି ହୁଏ । କୂର୍ମାକାର ଭୂମିରେ ରୋଗ ଜନ୍ମଇ ଧନୁ ଆକୃତିରେ ଚୌର ଭୟ ଓ ସୂର୍ଯ୍ୟାକୃତିରେ ଗୃହ କରିଲେ ଧନକ୍ଷୟ ହେବାର ପ୍ରମାଣ ମିଳେ ।

## ଗର୍ତ୍ତଶଙ୍କୁନ

ସ୍ତମ୍ଭସ୍ୟ ଖନନେ ଚୈବ ଆଦୌଗର୍ତ୍ତଂ ତଦାହ୍ୱତ
ଭସ୍ମାସ୍ଥି କାଷ୍ଠମଙ୍ଗାରଂ କେଶଂ ଚର୍ମ କପାଳକଂ
ମୃତ୍ତିକା ରକ୍ତାକ୍ତାଦନ୍ତଂ ମୃତ ଖଣ୍ଡାସ୍ଥି ଯଦବୈ
ତତ୍ରବାସ ନ କର୍ତ୍ତବ୍ୟଂ କୃତେ କୀର୍ତ୍ତି ଧନକ୍ଷୟଃ ।

ସ୍ତମ୍ଭ ଖନନ ସମୟ୍ରେ ଖନନ ଗର୍ତ୍ତ ମଧ୍ୟରୁ ଯେବେ ଭସ୍ମ, ଅସ୍ଥି, ଅଙ୍ଗାର, କାଷ୍ଠ, କେଶ, ଚର୍ମ, ମୁଣ୍ଡ,ନାଳମାଟି, ଦନ୍ତ, ଖପରଖଣ୍ଡି ବାହାରେ ତେବେ ସେଠାରେ ଗୃହ କରିବା ଉଚିତ୍ ନୁହେଁ, ବଳପୂର୍ବକ ଗୃହକଲେ ଧନ ଓ କୀର୍ତ୍ତି ବିନଷ୍ଟ ହୁଏ ।

ପାଷାଣେ ଅର୍ଥଲାଭଂ ଚ ଇଷ୍ଟକେ ସୁଖସମ୍ପଦଃ
ସର୍ପା ଦୌନଧନଂ କର୍ତ୍ତା ଅଙ୍ଗାରେଚ କୁଳକ୍ଷୟଃ

ସ୍ତମ୍ଭ ରୋପଣ ପାଇଁ ମୃତ୍ତିକା ଖନନ ସମୟ୍ରେ ଯଦିଚ ପଥର ବାହାରେ ତେବେ ସମ୍ପତ୍ତି ଲାଭହୁଏ । ଇଟା ବାହାରିଲେ ଧନ ମିଳେ ସର୍ପ ବାହାରିଲେ ଅତ୍ୟନ୍ତ ଦୁଃଖ ଘଟେ ଓ ଅଙ୍ଗାର ବାହାରିଲେ କୁଳ କ୍ଷୟ କରଏ ।

କୃତ୍ୱାଗର୍ତ୍ତଂ ରତ୍ନି ମାତ୍ରଂ ମୃତ୍ତିକାଂଚ ପ୍ରପୂରୟେତ
ଅଧିକେଽଥ୍ୟନ୍ତ ବୃଦ୍ଧି ସ୍ୟାତ ଧନହାନିଃ ସମେ ସମମ୍ ।

ରତ୍ନି ପରିମାଣରେ ( ବାହୁଦଣ୍ଡ ପର୍ଯ୍ୟନ୍ତ ) ଗୋଟିଏ ଗର୍ତ୍ତକରି ଖୋଳିବା ମାଟି ସେହି ଗର୍ତ୍ତରେ ପୁନଶ୍ଚ ପୂରଣ କରିବ । ଯଦିଚ ସେ ମାଟି ବଳିପଡ଼େ ତେବେ ଗୃହକର୍ତ୍ତାର ଧନ ବୃଦ୍ଧି ହୁଏ । ଊଣାହେଲେ ଧନ ହାନି କରଏ ସମାନ ହେଲେ ସମାନ ଫଳ ହୁଏ ।

### —ଦୀପର ଶୁଭାଶୁଭ ଲକ୍ଷଣ—

ବାସ୍ତୁ ମଧ୍ୟେ ତୁଲବରଂ କୃତ୍ୱାବାହୁ ପ୍ରମାଣତଃ
ଦୀପଂସ୍ତତ୍ର ସ୍ଥାପୟିତ୍ୱା ଭାବୟେତ୍ତତ୍ ଫଳାଦ୍ଦିକଂ

ବାସ୍ତୁ ଭୂମି ମଧ୍ୟରେ ବାହୁଦଣ୍ଡ ପର୍ଯ୍ୟନ୍ତ ଗର୍ତ୍ତ ଖୋଳି ସେହି ଗର୍ତ୍ତରେ ଗୋଟିଏ ଜ୍ୱଳନ୍ତ ଦୀପସ୍ଥାପନ କରିବ । ସେହି ଦୀପରେ ଶିଖା ଅନୁସାରେ ଗୃହ କର୍ତ୍ତାର ଶୁଭାଶୁଭ ଫଳ ବିଚାର କରିବ ।

ଶ୍ରୀଦା ଧୀପଶିଖା ଧୂମ୍ରା ବୃଦ୍ଧି ପ୍ରାଚୀଗତା ଭବେତ୍
ଆଗ୍ନେୟେ ସଦ୍ମା ଦାହଃସ୍ୟାଦ୍ ଯାମ୍ୟେମୃତ୍ୟୁର୍ବିନାଦଶେତ୍
ନୈର୍ଋତେ ଚ ମହଦ୍ଦୁଃଖଂ ବାରୁଣେ ଚ ଧନକ୍ଷୟଃ
ବାୟବ୍ୟେ ବ୍ୟାଧିପୀଡ଼ାସ୍ୟା ଦୁତ୍ତରସ୍ୟାଂ ଚ ସମ୍ପଦଃ
ଐଶାନ୍ୟେ ସୁଖବୃଦ୍ଧିଃସ୍ୟା ଦନ୍ତସୌଭାଗ୍ୟ ନିର୍ଣ୍ଣୟଃ ।

ଗର୍ତ୍ତ ମଧ୍ୟରେ ଦୀପ ଶିଖା ଧୂମ୍ର ବର୍ଣ୍ଣ ଦିଶିଲେ ଧନଲାଭ କରାଏ ପୂର୍ବଦିଗକୁ ଅଗ୍ନି ଶିଖା ଢଳିଲେ ଗୃହକର୍ତ୍ତାର ଧନ ବୃଦ୍ଧି ହୁଏ । ଅଗ୍ନି କୋଣକୁ ଢଳିଲେ ସେ ଗୃହ ଅଗ୍ନି ଦାହରେ ନଷ୍ଟହେବାର ଜଣାଯାଏ ଦକ୍ଷିଣ ଦିଗକୁ ଅଗ୍ନିଶିଖା ଢଳିଲେ ଗୃହକର୍ତ୍ତାର ମୃତ୍ୟୁହେବାରଜାଣିବ ନୈର୍ଋତ କୋଣକୁ ଢଳିଲେ ଗୃହକର୍ତ୍ତାର ସୁଖ ପ୍ରାପ୍ତି ହୁଏନାହିଁ । ପଶ୍ଚିମ ଦିଗକୁ ଗଲେ ଧନକ୍ଷୟ କରିବାର ସୁନିଶ୍ଚିତ ବାୟବ୍ୟ ଦିଗକୁ ଢଳିଲେ ବ୍ୟାଧିରେ ପୀଡ଼ାରେ ଗୃହକର୍ତ୍ତାର ଦିନଯାଏ । ଉତ୍ତର ଦିଗକୁ ଢଳିଲେ ଧନ ସମ୍ପତ୍ତି ମିଳେ । ଐଶାନ୍ୟକୁ ଢଳିଲେ ସୁଖ ପ୍ରାପ୍ତି କରାଏ । ଏହିପରି ଦୀପଶିଖା ଦେଖି ଗୃହର ଶୁଭାଶୁଭ ଫଳ ନିର୍ଣ୍ଣୟ କରିବ ।

## ତୃତୀୟ ପରିଚ୍ଛେଦ

### ଗୃହାରମ୍ଭେ ଶୁଭ ସୂଚନା

ଅଥ ଧେନୁଃ ସବତ୍ସା ବୃଷଗଜ ତୁରଗା ଦକ୍ଷିଣେ ବାମବହ୍ନି
ଦିବ୍ୟ ସ୍ତ୍ରୀ ପୂର୍ଣ୍ଣକୁମ୍ଭା ଦ୍ଵିଜନୃପଗଣିକା ପୁଷ୍ପ ମାଳା ପତାକା ।
ସଦ୍ୟୋମାଂସଂଘୃତଂ ବାଦଧିମଧୁସହିତଂ କାଞ୍ଚନଂ ଶୁକ୍ଲଧାନ୍ୟଂ
ଦୃଷ୍ଟ୍ୱାଶ୍ରୁତ୍ୱା ପଠିତ୍ୱାଫଳମିହଲଭତେ ମାନବୋଗେହକର୍ତ୍ତା ॥

ଗୃହାରମ୍ଭ ନିମିତ୍ତ ଶୁଭ ଦେବାବେଳେ କିମ୍ବା ଦକ୍ଷିଣ ଭାଗରେ ବତ୍ସା ସହିତ ଧେନୁ, ବୃଷଭ, ଅଶ୍ୱ, ହସ୍ତୀ ଦେଖିଲେ ଶୁଭ ହୁଏ ବାମ ପାଖରେ ଅଗ୍ନି ସୁନ୍ଦରୀ ସ୍ତ୍ରୀ ପୂର୍ଣ୍ଣକୁମ୍ଭ ବ୍ରାହ୍ମଣ ରାଜା ବେଶ୍ୟା ପୁଷ୍ପମାଳା ପତାକା ମଦ୍ୟ ଘୃତ ଦଧି ମଧୁ ସୁବର୍ଣ୍ଣ ଏ ଗୁଡ଼ିକ ଦେଖିବା ମଧ୍ୟ ଶୁଭପ୍ରଦ ।

ଅଶ୍ୱାରୂଢ଼ଂ ନରଂ ଦୃଷ୍ଟ୍ୱା ଦୋଳାରୂଢ଼ଂ ତଥୈବଚ ।
ଗଜାରୂଢ଼ଂ ଚ ଦୃଷ୍ଟ୍ୱାତୁ ରଜାଭବନ୍ତ ନଷ୍ଟସ୍ୟମ୍ ॥

ଶୁଭଦେବା ସମୟରେ ଅଶ୍ୱାରୋହୀ, ଗଜାରୋହୀ କିମ୍ବା ଦୋଲାରୋହୀ ଏପରି ଦୃଶ୍ୟ ହେଲେ ଗୃହକର୍ତ୍ତାର ରାଜତୁଲ୍ୟ ସୁଖ ସମ୍ମାନ ପ୍ରାପ୍ତ ହୁଏ ।

ଚକ୍ରବାକଶ୍ଚ ହଂସ ଶ୍ଚସାରଙ୍ଗେ ଯଦ୍ଦ ଦୃଶ୍ୟତେ
ଅନେ୍ୟଷଂ ଦର୍ଶନେ ବାପି ଶୋକୀ ଦୁଃଖୀ ଭବେତ୍ ଗୃହୀ ।

ଶୁଭ ସମୟରେ ଚକ୍ରବାକ ହଂସ ସାରଙ୍ଗ ଏମାନଙ୍କୁ ଦେଖିଲେ ଶୁଭ ଫଳ ମିଳେ । ଆଉମାନଙ୍କୁ ଦେଖିଲେ ଗୃହକର୍ତ୍ତା ଦୁଃଖ ଓ ଶୋକରେ ଜୀବନ କଟାଏ ।

ଦର୍ଶନେ ଚ ବିଡ଼ାଳସ୍ୟ ଶ୍ୱାହାନଂ ଭବସ୍ୟନ୍ତିହି
ବୃଷ କୋକିଳ କୀରଣାଂ ଦର୍ଶନେ ନିଧିମାପ୍ନୁୟାତ୍ ।

ଶୁଭ ଦେବା ସମୟରେ ବିରାଡ଼ି ଦୃଶ୍ୟ ହେଲେ ଧନହାନି ହୁଏ । ବୃଷ, କୋକିଳ, ଶୁକପକ୍ଷୀ ଏମାନଙ୍କୁ ଦେଖିଲେ ଘରକର୍ତ୍ତା ଧନୀହୁଏ ।

ଧୂମ୍ରବର୍ଣ୍ଣେ ବିଜାନୀୟା ଚାଶୁଭଂ ମୁଖେ ବନେ ବହ୍ନି ।
ଶୁଭାଶୁଭାନି ସର୍ବାଣି ଶାସ୍ତ୍ରଦୃଷ୍ଟାନି କର୍ମଣା ॥

ଦିଗ ମଣ୍ଡଳ ଶୁଭ ସମୟରେ ଯେବେ ଧୂମ୍ରବର୍ଣ୍ଣ ଦିଶନ୍ତି ତେବେ ଅଶୁଭ ଫଳ ପ୍ରାପ୍ତ ହୁଏ ।

ବାମନୋ କୁବ୍ଜ ଭିକ୍ଷୁଶ୍ଚ ବଧିରୋ ରୋଗ ପୀଡ଼ିତଃ
ଏତେଷାଂ ଦର୍ଶନେ ଗୃପି ଶୁଭଂ ନାସ୍ତି ଚ ସର୍ବଥା ।

ବାମନ କୁବ୍ଜ ଭିକ୍ଷୁକ ବଧିର ଓ ରୋଗଗ୍ରସ୍ତ ବ୍ୟକ୍ତି ଏମାନଙ୍କୁ ଶୁଭ ସମୟରେ ଦେଖିଲେ ଘରକର୍ତ୍ତାର ଶୁଭ ଫଳ ଆଦୌ ହେବନାହିଁ । ଏମନ୍ତ ସମୟରେ ଗୃହ କରିବା ନିଷେଧ ।

## —ସୂତ୍ରଘାତ—

ସୂତ୍ର କାର୍ଯ୍ୟଂ ପ୍ରବକ୍ଷାମି ଶୁଭାଶୁଭେ ତତଃପରଂ
ପୁଣ୍ୟେଽହନି ଶୁଭେ ଲଗ୍ନେ ତକ୍ଷକୋ ବଚ୍ଚେତ୍ତସ୍ୟତଃ ॥

ସୂତ୍ରଂ ନବୀନ ଶୁଦ୍ଧନ୍ତୁ ପୁରାତନଂ ନକାରୟେତ୍
ଚତୁର୍ବିଂଶାଙ୍ଗୁଳୈଃ ଶଙ୍କୋ ରୋପଣେ ଶୁଭଂ ଭବେତ୍ ।

ଶୁଭଲଗ୍ନ ଶୁଭମୁହୂର୍ତ୍ତରେ ଶୁଭଦିନରେ ବାସ୍ତୁ ଭୂମିରେ ସୂତ୍ରପାତ କରିବ । ନୂତନ ରଜ୍ଜୁରେ ସୂତ୍ରପାତ କରିବା ବିଧେୟ । ପୁରାତନ ରଜ୍ଜୁରେ କେବେ ହେଲେ ସୂତ୍ରପାତ କରିବ ନାହିଁ । ଶଙ୍କୁ କିଲା ଚବିଶ ଅଙ୍ଗୁଳ ପରିମାଣରେ କରିବା ନିୟମ, ମୁନିମାନେ କହିଅଛନ୍ତି ଏପରି ଶଙ୍କୁରେ ଗୃହର କିଲା ରୋପଣ କଲେ ଶୁଭଫଳ ମିଳଇ ।

ସୂତ୍ରେ ବିସ୍ତାର୍ଯ୍ୟମାଣେତୁ ପନ୍ନଗୋ ଯଦି ଦୃଶ୍ୟତେ
ଅଚିରେଣୈବ କାଳେନ ସ୍ୱାମୀ ନଶ୍ୟନ୍ତି ଗୃହିଣୀ ।

ସୂତ୍ର ପକାଇବା ବେଳେ ସର୍ପ ଦେଖା ଗଲେ ସେ ଭୂମିରେ ସର୍ପବାସ କରନ୍ତି କିମ୍ବା ଗୃହୀର ସର୍ପଘାତରେ ପ୍ରାଣଯାଏ ।

ସୂତ୍ରେ ବିସ୍ତାର୍ଯ୍ୟମାଣେତୁ ଘୋଟକୋ ଯଦି ରୁଦ୍ୟତେ
ହୟସ୍ଥାନଂ ବିଜାନୀୟାତ୍ ଶୋକାମୁଦ୍ଘାଟୟେତ୍ ଗୃହମ୍ ।

ସୂତ୍ରପାତ ସମୟେ ଘୋଡା ହ୍ରେସା ରବ କଲେ ସେ ଭୂମି ଘୋଡାଶାଳ ହୁଏ । ଗୃହକର୍ତ୍ତାର ଶୋକ ବ୍ୟଥିତ ସୁଖଲାଭ ହୁଏନାହିଁ ।

ସୂତ୍ରେ ବିସ୍ତାର୍ଯ୍ୟମାଣେତୁ ଘୋଟକୋ ଯଦି ରୁଦ୍ୟତେ ।
ଘୋଟକାସ୍ଥି ବିଜାନୀୟାତ୍ ଶଲ୍ୟଂତତ୍ରତୁ ନାନ୍ୟଥା ॥

ସୂତ୍ରପାତ ସମୟରେ ଘୋଟକର ରବଶୁଣାଗଲେ ସେହି ଭୂମିରେ ଘୋଟକ ଅସ୍ଥିଥିବାର ଜଣା ପଡ଼େ ।

ସୂତ୍ରେ ବିସ୍ତାର୍ଯ୍ୟ ମାଣେତୁ କୁଞ୍ଜରେ ଯଦିରୁଦ୍ୟତେ
ରକ୍ତସ୍ଥାନଂ ବିଜାନୀୟାତ୍ କୁଳହାନି ନସଂଶୟଃ ।

ସୂତ୍ର ପକାଇବାବେଳେ ଗଜ ରୋଦନ ଶୁଣାଗଲେ ସେହି ଭୂମିଟି ଗଜଭୂମି ବୋଲି ଜାଣିବ । ସେ ଭୂମିରେ ଘର ଆରମ୍ଭ କଲେ କୁଳ ହାନି ହୁଏ ।

ସୂତ୍ରେ ବିସ୍ତାର୍ଯ୍ୟମାଣେତୁ ଗଜଃକ୍ରୋଯଦାଭବେତ୍
ଗଜସ୍ୟାସ୍ଥି ବିଜାନୀୟାତ୍ ବାସ୍ତୁଭୂମୌ ନ ସଂଶୟଃ ।

ସୂତା ପକାଇ ମାପିବା ସମୟରେ ଯେବେ ହସ୍ତୀ ଗର୍ଜ୍ଜନ କରନ୍ତି ତେବେ ସେହି ଭୂମିରେ ହାଡ଼ହାଡ଼ ଥିବାର ପ୍ରମାଣ ମିଳେ ।

ସୂତ୍ରେ ବିସ୍ତୀର୍ଯ୍ୟମାଣେତୁ ଗବାଂ ବା ରୋଦନଂ ଯଦି
ଗବାସ୍ଥି ତତ୍ରଜ୍ଞାତବ୍ୟଂ ଗୃହସ୍ୱାମୀ ମୃତ୍ୟୁରେବହି ।

ସୂତ୍ରପାତ ସମୟରେ ଗୋରୁ ବୋବାଇଲେ ସେହି ଭୂମିରେ ଗବାସ୍ଥି ଥିବାର ଜାଣିବ । ସେହି ଭୂମିରେ ବାସକଲେ ଗୃହକର୍ତ୍ତାର ମୃତ୍ୟୁ ହୁଏ ।

ସୂତ୍ରେ ବିସ୍ତୀର୍ଯ୍ୟମାଣେତୁ ଶ୍ୱାନରୋଶ୍ରୁୟତେ ଯଦି
ସ୍ଥାନାନ୍ତରେ ଲଭେତ୍ତସ୍ୟ ବିପତ୍ତେରେବକାରଣମ୍ ।

ସୂତା ମାପକରିବା ସମୟରେ ଶ୍ୱାନରାବ ଶୁଣିଲେ ଘରସ୍ୱାମୀକୁ ବହୁତ ବିପଦ ପଡ଼େ ଏବଂ ସ୍ଥାନାନ୍ତର ଯୋଗ ଘଟେ ।

ସୂତ୍ରେ ବିସ୍ତୀର୍ଯ୍ୟମାଣେତୁ ମହାବାତୋର୍ଦ୍ଧ୍ୱବେଦଯଦି
ବର୍ଜ୍ଜୟେଦ୍ଧୁଣଂ ଭୂମିଂ ବାତଲଗ୍ନ ଭବେତ୍ ଗୃହମ୍ ।

ସୂତ୍ର ପକାଇବା ସମୟରେ ଯେବେ ପ୍ରବଳ ବେଗରେ ପବନ ବହେ ତେବେ ସେ ଘରଟି ପବନରେ ନଷ୍ଟହେବ ବୋଲି ଜାଣିବ । ସେହି ଭୂମିରେ ଘର କରିବ ନାହିଁ ।

ସୂତ୍ରେ ବିସ୍ତୀର୍ଯ୍ୟମାଣେତୁ କୁଷ୍ଠରୋଗୀରଦୃଶ୍ୟତେ
ବର୍ଜ୍ଜୟେଦ୍ଧୁଣଂ ସଦୁସର୍ବଦ ଭୂମିମିଚ୍ଛତି ।

ସୂତା ପକାଇବା ବେଳେ କୁଷ୍ଠ ରୋଗୀକୁ ଦେଖିଲେ ସେହି ଭୂମିରେ ଘର କରିବ ନାହିଁ । କଲେ ଘରକର୍ତ୍ତା ବ୍ୟାଧିଗ୍ରସ୍ତ ହୁଏ ।

ସୂତ୍ରେ ବିସ୍ତୀର୍ଯ୍ୟମାଣେତୁ ଶଙ୍ଖଶବ୍ଦ ଭବେଦ୍ୟଦି
ଦେବଭୂମ ଭବେତ୍ତଂତୁ ମାନବଃ ପରିବର୍ଜୟେତ୍ ।

ସୂତ୍ରପାତ ବେଳେ ଶଙ୍ଖ ଶବ୍ଦ ଶୁଭିଲେ ସେହି ଭୂମିକୁ ଦେବ ଭୂମି ବୋଲି ଜାଣିବ । ସେଥିରେ ମନୁଷ୍ୟ ବାସ କରିବ ନାହିଁ ।

ସୂତ୍ରେ ବସ୍ତୀର୍ଯ୍ୟମାଣେତୁ ରକ୍ତବୃଷ୍ଟି ଭବେଦ୍ ଯଦି
ଧନହାନି ବିଜାନୀୟାଦ୍‌ବ୍ୟାଧିଗ୍ରସ୍ତସ୍ୟ ଭବେଦ୍ଧ୍ରୁବଂ ।

ଯେବେ ସୂତ୍ରପାତ ବେଳେ ରକ୍ତ ବୃଷ୍ଟି ହୁଏ ତେବେ ଗୃହ ସ୍ୱାମୀ ରୋଗ ପୀଡ଼ିତ ଓ ଦରିଦ୍ର ହେବେ ବୋଲି ଜାଣିବ ।

ସୂତ୍ରେ ବସ୍ତୀର୍ଯ୍ୟମାଣେତୁ ରୋଦନଂ ଶ୍ରୂୟତେ ଯଦି
ନ ମାନେ ସ୍ଥିତଂଶଲ୍ୟଂ ଚ ମୁଣ୍ଡମାଳାଂ ବିଚକ୍ଷଣଃ ।

ସୂତ୍ରପାତ ବେଳେ ଯେବେ କ୍ରନ୍ଦନ ଧ୍ୱନି ଶୁଣାଯିବ ତେବେ ସେହି ବାସ୍ତୁରେ ନାଭି ଗର୍ଭରେ ମୁଣ୍ଡ ଥିବାର ଜାଣିବ । ସେହି ମୁଣ୍ଡ ବାହାର ନ ହେବା ପର୍ଯ୍ୟନ୍ତ ସେହି ଭୂମିରେ କେହି ବାସ କରିବ ନାହିଁ ।

ଗର୍ଦ୍ଦଭରାବଧ୍ୱନିଂ ଚୈବ ସର୍ବତଃ ପରିବର୍ଜୟେତ୍
କ୍ରନ୍ଦତେ ବାସ୍ତୁପାଳଶ୍ଚେତ୍ ଧ୍ରୁବଂ ମୃତ୍ୟୁର୍ନସଂଶୟଃ ।

ଗର୍ଦ୍ଦଭଧ୍ୱନି ଯେବେ ସୂତା ପକାଇବା ବେଳେ ଶୁଣାଯାଏ ତେବେ ଗୃହପାଳ ଯଦି ସର୍ବଦା କ୍ରନ୍ଦନ ଧ୍ୱନି କରି ଶେଷରେ ମୃତ୍ୟୁ-ପ୍ରାପ୍ତ ହୁଏ । ଏପରି ଶୁଣିଲେ ଗୃହ କରିବ ନାହିଁ ।

ସୂତ୍ରେ ବସ୍ତୀର୍ଯ୍ୟ ମାଣେତୁ ବକାନି ଯଦି ଦୃଶ୍ୟତେ
ମେଷସ୍ୟ ଦର୍ଶନେ ଚୈବ ଖଗ ସୂଚନ ଏବହି ।

ବକ ବଗ୍ର କମ୍ବା ମେଷ ଯଦି ସୂତ୍ରପାତ ସମୟେ ଦେଖାଦିଅନ୍ତି ତେବେ ସେହି ବାସ୍ତୁରେ ଗଉଡ଼ି ହାଡ଼ଅଛି ବୋଲି ଜାଣିବ ।

ମଣ୍ଡୂକସ୍ୟ ଧ୍ୱନିଂଶ୍ରୁତା ଫଳପୂର୍ଣ୍ଣ ଭବେଦ୍ ଗୃହଂ
କୂର୍ମସ୍ୟ କୂର୍ମଂ ଚ ଦୃଷ୍ଟ୍ୱାତ୍ତୁ ଜମ୍ବୁକରୋଦନେଽଶୁଭଂ

ବେଙ୍ଗଧ୍ୱନି ସୂତା ପକାଇବାବେଳେ ଯେବେ ଶୁଣ ଯାଏ ତେବେ ସେହିଘର ମନ ପୂର୍ଣ୍ଣ ଅମୃତାନ ହୁଏ ଆଉ କାଛିମ ମାଟିଆ ଦେଖିଲେ କମ୍ବା ବିଲୁଆ ଭୁକିଲେ ଅନେକ ଶୁଭଫଳ ହୁଏ ନାହିଁ ।

ସୂତ୍ରେ ବସ୍ତୀର୍ଯ୍ୟମାଣେତୁ ବାସ୍ତୁପାଳ ମୁଖଂ ଯଦା
ବାସ୍ତୁସୋ ଯଦରୁଦ୍ୟେତ ଦୃଷ୍ଟ୍ୱା ମୃତ୍ୟୁ ବିନିର୍ଦ୍ଦିଶେତ୍ ।

ସୂତ୍ର ପଡ଼ିବା ବେଳେ ଗୃହ ସ୍ୱାମୀ ମୁହଁକୁ ଗୃହଁ ଯଦି କାକ ରାବବଦଏ ତେବେ ସେ ଗୃହସ୍ୱାମୀର ମୃତ୍ୟୁ ଘଟିବାର ପ୍ରମାଣ ମିଳେ ।

ଗୃହାକାରେ ଯଦାସୂତ୍ରଂ ଦଦ୍ୟାତ୍ ବୈତନୁ ଶୁଦ୍ଧତାଂ
ଜାନୁଶ୍ଚଗେ କଟି ଦେଶେ କୃତ୍ୱା ତୁ ନନ୍ୟସେତ୍ କରମ୍

ଗୃହକର୍ତ୍ତା ସୂତ୍ରପାତ ସମୟରେ ନିଜର ଶରୀର ଶୁଦ୍ଧ କରିବ ସେ ସମୟରେ ନିଜର ଜାନୁ କମ୍ବା କଟି ଦେଶ ( ଅଣ୍ଟା ) ରେ ହସ୍ତ ଦେବ ନାହିଁ ।

ଶଙ୍ଖ ଷଘ୍ନଷ୍ଟ ନର୍ଘୋଷେ ଭେଦଘୋଷେ ଭବେତ୍ ଶୁଭଂ
ଜ୍ୟୋତିଃଶାସ୍ତ୍ର କଥାଯ୍ୟାଂ ତୁ ବର୍ଦ୍ଧତେ ଗୃହାଣୋଧନମ୍ ॥

ସୂତ୍ରପାତ ସମୟେ ମେଘ ଗର୍ଜ୍ଜନ ଶୁଣା ହେଲେ ଗୃହ ସ୍ୱାମୀର ଶଙ୍ଖଧ୍ୱନି ଯାନ୍ତ୍ର ବେଦ ପାଠ ହେଲେ ଶୁଭ ଫଳ ହୁଏ । ଧନଧାନ୍ୟ ବୃଦ୍ଧି କରାଏ ଏହା ଜ୍ୟୋତିଃଶାସ୍ତ୍ରରେ ଉଲ୍ଲେଖ ଅଛି ।

—ଃ୦ଃ—

## ସ୍ତମ୍ଭାରୋପଣ ନିୟମ

ଐଶାନ୍ୟେ ସ୍ତମ୍ଭ ମାରୋପ୍ୟଂ କୃତ୍ୱାବାହୁ ପ୍ରମାଣତଃ
ଗର୍ତ୍ତଂ ରତ୍ନ ଦୁକୁଳୈଷ୍ଟ ଗୃତନ୍ୟୈରପି ଶୁଭ୍ରଦନେ ।

ଐଶାନ୍ୟ କୋଣରେ ସ୍ତମ୍ଭ ଆରୋପଣ କରିବା ଶିଳ୍ପି ଶାସ୍ତ୍ର-ସମ୍ମତ ଗୃହ ସ୍ୱାମୀର ତାର ଚନ୍ଦ୍ରଶୁଦ୍ଧି ଦିନରେ ବାହୁ ପରିମାଣରେ ଗୋଟିଏ ଗାତ ଖୋଳି ସେ ଗାତରେ ଗୋମୟ ଲେପନ କରିବ । ଗାତର ପୂର୍ବ ଭାଗରେ ପୂର୍ଣ୍ଣକୁମ୍ଭ କଳସ ସ୍ଥାପିବ । ଦଧି ମତ୍ସ୍ୟ ଦର୍ପଣ ଆଦିଶୁକ୍ଳବର୍ଣ୍ଣ ପଦାର୍ଥ ଦର୍ଶନ ପାଇଁ ସ୍ଥାପନ କରିବ ।

ମଙ୍ଗଳ ସୂଚକ ଶଙ୍ଖ ଶବ୍ଦ ଶୁଣା ଯାଉଥିବ ଜ୍ୟୋତିଃଶାସ୍ତ୍ରଜ୍ଞ ମଙ୍ଗଳାଷ୍ଟକ ଓ ବ୍ରାହ୍ମଣମାନେ ସ୍ୱସ୍ତି ବାଚନ ପାଠ କରୁଥିବେ ଭାର୍ଯ୍ୟା ପୁତ୍ର ବନ୍ଧୁ ସହୋଦର ସଖାମାନେ ବେଷ୍ଟିତ ହୋଇଥିବେ । ଏହି ସମୟରେ ଶିଳ୍ପିକାର ଗନ୍ଧ ପୁଷ୍ପାଦି ଦ୍ୱାରା ସ୍ତମ୍ଭ ପୂଜାକରି ସେହି ସ୍ତମ୍ଭରେ ପଞ୍ଚରତ୍ନ ଗୁଡ଼ିକ ଦେଇ ନୂତନ ବସ୍ତ୍ର ବେଷ୍ଟନ କରାଇ

ସ୍ତମ୍ଭାରୋପଣ କରାଇବ । ସ୍ତମ୍ଭ ମୂଳରେ ଧାନ୍ୟ ପଦ୍ମପୁଷ୍ପ ପଦ୍ମ ନାଳ ଆଦି ଲକ୍ଷ୍ମୀ ସନ୍ତୁଷ୍ଟ ଦ୍ରବ୍ୟ ଦେବ । ପରଶେଷରେ ଜ୍ୟୋତିଷ ବ୍ରାହ୍ମଣ ଓ ଶିଳ୍ପିକାରଙ୍କୁ ଯଥା ସାଧ ଦକ୍ଷିଣା ଦେଇ ସନ୍ତୋଷ କରାଇବ ।

—:o:—

## ଗୃହ ନିର୍ମିତ ସ୍ତମ୍ଭ କାଷ୍ଠ

ଗଜ ଭଗ୍ନଂ ତଥା ବାତ୍ରଂ ନିର୍ଘାତା ଶନିପୀଡ଼ିତଂ
ଊର୍ଦ୍ଧ୍ୱ ଶୁଷ୍କଂ ତଥା ଦାରୁ ବନ୍ଧଂ ଲଗ୍ନଂତୁ ବର୍ଜ୍ଜୟେତ୍ ।

ହସ୍ତୀ ଭଗ୍ନ କାଷ୍ଠ ନିର୍ଘାତ ବଜ୍ରରେ ଶୁଷ୍କ ହୋଇଥିବା କାଷ୍ଠ ଉଇ ଲାଗିଥିବା କାଷ୍ଠ, ଠିଆହୋଇ ଶୁଖିଥିବା କାଷ୍ଠ, ବନ୍ଧକାଷ୍ଠ ଗଣ୍ଠିଆ କାଷ୍ଠ ଏମାନଙ୍କୁ ଗୃହର ସ୍ତମ୍ଭରେ ଲଗାଇବ ନାହିଁ ।

ପତ୍ର ପୁଷ୍ପ ଫଳୈର୍ଯୁକ୍ତଂ ବୃକ୍ଷଂ ମାତ୍ୱା ପ୍ରଯତ୍ନତଃ
କାର୍ଯ୍ୟସିଦ୍ଧି ଭବେତ୍ତସ୍ୟ ସର୍ବଦୋଷୋ ବିନଶ୍ୟତି ।

ପତ୍ର ପୁଷ୍ପ ଓ ଫଳ ସଂଯୁକ୍ତ ହୋଇଥିବା ବୃକ୍ଷକୁ ନେଇ ସ୍ତମ୍ଭା-ରୋପଣ କଲେ ଗୃହକର୍ତ୍ତାର ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ ।

ମୂଳ ସ୍ଥୂଳଂ ଭବେତ୍ ପୁଂସି ମଧ୍ୟସ୍ଥୂଳଂ ନପୁଂସକେ
ଅଗ୍ରସ୍ଥୂଳଂ ଚ ଯୁବତୌ ଚୈବଂ ଜ୍ଞେୟଂ ଯଥାକ୍ରମମ୍ ।

ଯେଉଁ କାଷ୍ଠର ମୂଳଭାଗ ମୋଟାଥାଏ ସେ କାଷ୍ଠକୁ ପୁରୁଷ-କାଷ୍ଠ କହି । ଯେଉଁ କାଷ୍ଠର ଅଗ୍ରଭାଗ ମୋଟା ସେ ସ୍ତ୍ରୀ ଜାତୀୟ କାଷ୍ଠ ଯାହାର ମଧ୍ୟ ଭାଗ ମୋଟା ସେ ନପୁଂସକ କାଷ୍ଠ ଅଟଇ ।

ପୁଂସି ସ୍ତମ୍ଭସ୍ୟା ରୋପଣେ ଧନ ପୁତ୍ର ବିବର୍ଦ୍ଧନଂ
ଅଭାବେ ଯୁବତୀ ସ୍ତମ୍ଭଂ ନପୁଂସକ ଚ ବର୍ଜୟେତ୍ ।

ପୁରୁଷ କାଷ୍ଠରେ ସ୍ତମ୍ଭାରୋପଣ କଲେ ଧନ ପୁତ୍ର ବୃଦ୍ଧି ହୁଏ ଅଭାବରେ ସ୍ତ୍ରୀ କାଷ୍ଠରେ ମଧ୍ୟ ସ୍ତମ୍ଭାରୋପଣ କରାଯାଇପାରେ । ନପୁଂସକ କାଠରେ ସ୍ତମ୍ଭାରୋପଣ କରିବାର ନିୟମ ନାହିଁ । କଲେ ଗୃହସ୍ୱାମୀର ଅନିଷ୍ଟ ଘଟେ ।

କାଷ୍ଟେନ ବ୍ରହ୍ମ ଜାତିଃ ସ୍ୟାଦିଷ୍ଟକ କ୍ଷତ୍ରିୟସ୍ୟବୈ
ନନ୍ଦନେ ବୈଶ୍ୟ ଜାତେସ୍ୟାତ୍ ଶୂଦ୍ର ଜାତିସ୍ୟଶୀଳୟା
ଇଷ୍ଟକ ଶ୍ୱେତରେ ଚୈବ ପୂର୍ବେତନନ୍ଦକଂ ଭବେତ୍
ପାଷାଣ ଦକ୍ଷିଣେ ଚୈବ ପଶ୍ଚିମେ ଚନ୍ଦନଂ ତଥା ।

ବ୍ରହ୍ମ ଜାତୀୟ ଭୂମିରେ ଚନ୍ଦନ କାଠରେ ପଶ୍ଚିମ ଦିଗରେ ଶୁଭ ଦେବାର ବିଧାନ ଅଛି, କ୍ଷତ୍ରୀୟ ଜାତି ଭୂମିରେ ଉତ୍ତର ଦିଗରେ ଇଟା ଦ୍ୱାରା ଶୁଭ ଦେବ ବୈଶ୍ୟ ଜାତିର ଭୂମିରେ ପୂର୍ବ-ଦିଗରେ କୂପନନ୍ଦ ଦ୍ୱାରା ଶୁଭ ଦେବ ଶୂଦ୍ର ଜାତିରେ ଭୂମିର ଦକ୍ଷିଣ ଦିଗରେ ପାଷାଣ ଦ୍ୱାରା ଶୁଭ ଦେବ ।

—*—

## ବ୍ରହ୍ମ ଶିଳା

ଅଷ୍ଟାଙ୍ଗୁଳାଂ ଶିଳାଂ କୃତ୍ୱା ଧାତୁ ଶିଳାଂ ତଥୈବଚ
ପଦ୍ମାକାରଂ ତଥାରତ୍ନଂ ଶିଳା ମଷ୍ଟାଧିକାଂ ତ୍ୟଜେତ୍ ।

ପାଷାଣ ଶୁଭ ଦେବାକୁ ହେଲେ ପାଷାଣର ଦୀର୍ଘ ପ୍ରସ୍ଥ ଆଠ ଆଙ୍ଗୁଳ ରଖି ପଦ୍ମାକାର କରିବ । ଅଷ୍ଟାଙ୍ଗୁଳରୁ ଅଧିକ କରିବ ନାହିଁ । ସେହି ପଦ୍ମାକୃତି ପାଷାଣକୁ ରତ୍ନ କୁହାଯାଏ ।

ପ୍ରମାଣଂ ପାଷାଣଂ ଚୈବ ସମଂକୃତ୍ୱା ତଥାଗତଂ
କୁଙ୍କୁମ ଗନ୍ଧ ପୁଷ୍ପାଦ୍ୟୈ ଦୂର୍ବାକ୍ଷତୈଶ୍ଚ ସଥାନନମ୍ ।

ଯେଉଁ ପାଷାଣରେ ଶୁଭ ଦିଆଯିବ ତାକୁ ଗୃହଆଡ଼ ସମାନ କରି ଚିକ୍କଣ କରିବ । ଦୁବ ଅକ୍ଷତ କୁଙ୍କୁମ ଗନ୍ଧ ଚନ୍ଦନ ସହିତ ପୂଜାକରି ପାଷାଣକୁ ଶୁଭ ଦେବ ।

—*—

# ଚତୁର୍ଥ ପରିଚ୍ଛେଦ

—ଧ୍ୱଜାଦି ଅଷ୍ଟ ବନ୍ଧ ନିର୍ଣ୍ଣୟ—

ବ୍ୟାସେନ ଗୁଣିତଂ ଦୈର୍ଘ୍ୟଂ ପିଣ୍ଡଂ କୃତ୍ୱାଦରେପୁନଃ
ଅଷ୍ଟାଭିଶେଷ ଭାଗନ୍ତୁ ଜ୍ଞେୟଂ ଧ୍ୱଜାଦିକଂ ବୁଧୈଃ ।

ବାସ୍ତୁର ଦୀର୍ଘ ପ୍ରସ୍ଥ ଉଭୟ ହାତକୁ ୨୪ ଗୁଣି ଅଙ୍ଗୁଳ ମିଶାଇ ଉଭୟକୁ ଅଙ୍ଗୁଳ କଲ ପରେ ଦୀର୍ଘକୁ ପ୍ରସ୍ଥରେ ଗୁଣି ଗୁଣଫଳକୁ ଆଠ ଦ୍ୱାରା ହରିବ ଲବ୍ଧ ଅଙ୍କରେ କାର୍ଯ୍ୟ ନାହିଁ ଭାଗଶେଷ ଯାହା ରହିବ ତହିଁରୁ ବନ୍ଧ ବିଚାର କରିବ ।

ଧ୍ୱଜୋଧୂମ୍ର ସିଂହ ଶ୍ୱଂଚ ଶ୍ୱାନ ବୃଷଃ ଖରସ୍ତଥା
ଗଜୋ ଧ୍ୱଂକ୍ଷସ୍ତଥାଷ୍ଟାନ ଶିଲ୍ପିଶାସ୍ତ୍ରବିଦଃ ବିଦୁଃ

୧ ଧ୍ୱଜ ୨ ଧୂମ୍ର ୩ ସିଂହ ୪ ଶ୍ୱାନ ୫ ବୃଷ ୬ ଖର ୭ ଗଜ ବନ୍ଧ ଅଟେ ମନ୍ଦିର ଆଠ ରହେ ଅର୍ଥାତ୍ ଶୂନ୍ୟଯାଏ ତେବେ ଧ୍ୱଂକ୍ଷ ବନ୍ଧ ହୁଏ ତ ହାକୁ କାକବନ୍ଧ କୁହନ୍ତି ।

ଧ୍ୱଜେ ବିଭୂତି ମରଣଂଚ ଧୂମ୍ରେ
ସିଂହେଜୟଃ ଶ୍ୱାନ କଲେଚ୍ଚ୍ୟ ନର୍ଥଂ ।
ଭୋଗା ବୃଷେ ହାନି କରଃ ଖରେଚ
ଧ୍ୱଂକ୍ଷି ଗଜେ କାକ ବନ୍ଧେଚ ଦୁଃଖମ୍ ।

ଧ୍ୱଜ ବନ୍ଧରେ ବାସଗୃହ କଲେ ଧନ ଲାଭ ହୁଏ ଧୂମ୍ର ବନ୍ଧରେ ମୃତ୍ୟୁ ଘଟେ, ସିଂହ ବନ୍ଧରେ ଜୟ ଓ ସୁଖଶାନ୍ତି ମିଳେ, ଶ୍ୱାନ ବନ୍ଧରେ ଅନର୍ଥ ଘଟେ, ଖର ବନ୍ଧରେ ଲକ୍ଷ୍ମୀ ଲାଭ କରାଏ ଓ କାକ ବନ୍ଧରେ ନାନା ପ୍ରକାର ଦୁଃଖ ଘଟାଏ ।

ଧ୍ୱଜେଦେବ ଗୃହଂ କୁର୍ଯ୍ୟାତ୍ ଧୂମ୍ରେଣ ହୋମ ଶାଳକଃ
ସିଂହେଚ ସ୍ତ୍ରୀ ଗୃହଂ କୁର୍ଯ୍ୟାତ୍ ଶ୍ୱାନେବୈକୁଣ୍ଠା ଶାଳକଃ
ବୃଷେ ଗାବ ଗୃହଂ କୁର୍ଯ୍ୟାତ୍ ଖରେଣ ମେଷ ଶାଳୟୋ
ଗଜେ ଭଣ୍ଡାରକଂ ଚୈବ ଧ୍ୱଂକ୍ଷେତ ଶସ୍ତ୍ର ଶାଳକଃ ।

ଧ୍ୱଜ ବନ୍ଧରେ ଦେବତା ଗୃହ ଦେଉଳ ଅଟ୍ଟାଳିକା ପ୍ରଭୃତି କରିବା ଉଚିତ ଅଟେ ଧୂମ୍ର ବନ୍ଧରେ ଯଜ୍ଞଶାଳ, ସିଂହ ବନ୍ଧରେ ରାଣୀ ହଂସପୁର, ଶ୍ୱାନ ବନ୍ଧରେ ଢିଙ୍କି ଶାଳ ଆଦି କୁଟୀର, ବୃଷ ବନ୍ଧରେ ଗୋଶାଳା, ଖରବନ୍ଧରେ ମେଷ ଶାଳ, ଗଜବନ୍ଧରେ ଭଣ୍ଡାର ଘର ଓ ବାସଗୃହ, ଓ କାକ ବନ୍ଧରେ ଶସ୍ତ୍ରଶାଳ କରିବାର ବିଧି ଅଟେ ଏପରି କଲେ ସେ ଗୃହ ବହୁତ ଦିନ ପର୍ଯ୍ୟନ୍ତ ରହେ ।

୧—ପ୍ରାସାଦେ ପ୍ରଶ୍ନ ମାଲଙ୍ଗେ ଜଗତ୍ଥ ପୀଠ ମଣ୍ଡପେ
ଦେବ୍ୟା କୁଣ୍ଡେ ହ୍ୱଚୌ ଚୈବ ପତାକା ନୂସ ଗୃମରେ
ବାପୀକୁପତଡ଼ାଗେଷୂ କୁଣ୍ଡା ଦୌଚ ଜଲାଶୟେ
ଶୁଭ ସ୍ଥାନେଷୁ ସର୍ବେଷୁ ନୃଲଂ ତନ୍ଧ ପ୍ରଦାପୟେତ୍
ଆସନେ ଦେବ ପୀଠଂଚ୍ଛ ଧ୍ୱଜଂ ଚୈବ ନିବେଶୟେତ୍

ପ୍ରାସାଦ ପ୍ରତିମା ନିର୍ମାଣ ଗୃହ, ଶିବ ମନ୍ଦିର, ଜଗତ୍ଥ, ପୀଠ ମଣ୍ଡପାଦି ବେଦୀ କୁଣ୍ଡ ଯଜ୍ଞଶାଳ କୂପ ବାପୀ ପୁଷ୍କରିଣୀ ପ୍ରଭୃତି ପ୍ରତ୍ୟେକ ଶୁଭ ଶୁଦ୍ଧ ସ୍ଥାନ ଆସନ ଓ ଦେବତା ସ୍ଥାନମାନଙ୍କ ସକାଶେ ଧ୍ୱଜ ବନ୍ଧ କରିବ ।

୨—ଅଗ୍ନିକାର୍ଯ୍ୟେଷୁ ସର୍ବେଷୁ ପାକ ସଦ୍ମେ ତଥୈବଚ
ଧୂମ୍ରଂ କୁଣ୍ଡସ୍ୟ ସଂସ୍ଥାନେ ହୋମ କର୍ମ ଗୃହେଽପିବା

ଅଗ୍ନିକାର୍ଯ୍ୟ ହେଉଥିବା ଗୃହରେ ପାକ ଶାଳାରେ ସୁବର୍ଣ୍ଣାଦି ଧାତୁ ଦ୍ରବ୍ୟ ପ୍ରସ୍ତୁତ ହେଉଥିବା ଗୃହରେ ଧୂମ୍ରବନ୍ଧ କରିବାର ବିହିତ ।

୩—ଆୟୁଦ୍ଧେଷୁ ଚ ସର୍ବେଷୁ ଶସ୍ତ୍ରାଣାଂ ଭବନେଷୁ ଚ ।
ସିଂହାସନେ ନୃପସ୍ଥାନେ ସ୍ତ୍ରୀ ଗୃହେ ସିଂହ ବନ୍ଧୟେତ୍ ।

ସକଳ ପ୍ରକାର ଅସ୍ତ୍ରାସ୍ତ୍ର ଗୃହରେ ସିଂହାସନରେ ରାଜାମାନଙ୍କ ବୈଠକ ସ୍ଥାନରେ ରାଣୀହଂସପୁରରେ ସିଂହବନ୍ଧ କରିବା ବିଧେୟ ।

୪—ଯବନ ମ୍ଳେଚ୍ଛ ଗେହେଷୁ ବୈଶ୍ୟାଗାରେ ନଟସ୍ୟଚ
ଗୃହେ ଶ୍ୱାନ୍ତୁନିଧାତବ୍ୟସ୍ତଥା ଶୂନୋପଜୀବନାମ୍

ଯବନ ମ୍ଳେଚ୍ଛମାନଙ୍କ ରହିବା ଗୃହ ବୈଶ୍ୟଗୃହ ଶ୍ୱାନାଦି ଜୀବମାନଙ୍କ ରହିବା ଗୃହ ନର୍ତ୍ତକ ଗୃହମାନଙ୍କରେ ଶ୍ୱାନ ବନ୍ଧ କରିବ ।

୫।୬—ବଣିକ ଗେହେ ଭୋଜନସ୍ୟ ଗୃହେଚ ପଂକ୍ତି ମଣ୍ଡପେ
ବୃଷତୁରଗ ଶାଳାସୁଂ ଗୋଶାଳ ଗୋକୁଳେଷୁଚ
ବାଦ୍ୟ ନୃତ୍ୟ ଶାଳାଂ ବୃଷଭଂଚ ନିବେଶୟେତ୍
କୁମ୍ଭାଲ ରଜକାଦିନାଂ ଖରଂ ଗର୍ଦ୍ଦଭଜୀବିନାମ୍

ବଣିକ ଗୃହରେ, ଭୋଜନାଳୟରେ, ଚଂକ୍ରମଣ୍ଡପରେ ଗୋଶାଳାରେ ବୃଷବନ୍ଧ ହେବା ଆବଶ୍ୟକ । କୁମ୍ଭାର ଧୋବା ଇତ୍ୟାଦି ଜୀବମାନ ମାନଙ୍କ ପାଇଁ ଘରରେ ଖରବନ୍ଧ କରିବ ।

୭—ଗଜଂ ତୁ ଗଜ ଶାଳାୟାଂ କାମାଗାରେ ତଥାଗଜଂ
ସିଂହାସନେ ଗଜଂତ୍ୟକ୍ତ୍ୱା ପାନଶ୍ୱାପ ଗୃହେଷୁ ଚ

ଗଜ ଶାଳ ପାଇଁ ଗଜ ବନ୍ଧ କରିବ ଭଣ୍ଡାର ଘର ଓ ଶୟନ ଘର ପାଇଁ ଗଜବନ୍ଧ କରିବା ବିଧେୟ ସିଂହାସନ ପାଇଁ ନୁହେଁ ।

୮—ମଠେଷୁ ଚୈତ୍ୟଶାଳାୟାଂଜୈନ ଶାଳାଦିଷୁକ୍ରମାତ୍
ଧ୍ୱାଙ୍କ୍ଷଂଚୈବ ପ୍ରଦାତବ୍ୟ ଶିଳ୍ପ କର୍ମ ପ୍ରଜୀବନାମ୍ ।

ମଠରେ, ଚୈତ୍ୟଶାଳାରେ,ଜୈନମାନ ଘରରେ, ଶିଳ୍ପକାରଙ୍କ ଘରରେ କାକବନ୍ଧ କରିବ ।

ବିପ୍ରାଣାଂ ଧ୍ୱଜବନ୍ଧସ୍ୟାତ୍ ସିଂହେଚ କ୍ଷତ୍ରିୟସ୍ୟବୈ
ଗଜବନ୍ଧସ୍ତୁ ବୈଶ୍ୟସ୍ୟ ଶୂଦ୍ରସ୍ୟ ବୃଷ ବନ୍ଧତଃ
ଧୂମ୍ର ବନ୍ଧେ ବିପ୍ରତଜେଶ୍ୱା ସ୍ତୁତଃ କ୍ଷତ୍ରିୟସ୍ୟଚ
ଖରେ ବୈଶ ସ୍ୟ ବିଜ୍ଞେୟୋଧ୍ୱାଂକ୍ଷ ଶୂଦ୍ରସ୍ୟ ଏବଚ

ବ୍ରାହ୍ମଣମାନଙ୍କର ଧ୍ୱଜ ଓ ଧୂମ୍ରବନ୍ଧ କ୍ଷତ୍ରିୟମାନଙ୍କର ସିଂହ ବନ୍ଧ, ବୈଶ୍ୟମାନଙ୍କର ଗଜ ଓ ଖରବନ୍ଧ, ଶୂଦ୍ରମାନଙ୍କର ବୃଷ ଓ କାକବନ୍ଧ ହେବା ବିହିତ ।

ପୂର୍ବଦ୍ୱାରେ ବୃଷଶ୍ଚୈବ ଦକ୍ଷିଣେ ଗଜ ଏବଚ
ଧ୍ୱଜେତୁ ପଶ୍ଚିମେ ଦ୍ୱାର ଉତ୍ତରେ ସିଂହ ମେବ ଚ
କାକସ୍ତୁ ନୈର୍ଋତେ ବାପି ଧୂମ୍ରେ କୋଣେଚ ବାୟବ୍ୟେ
ଶ୍ୱାନ ପ୍ରୋକ୍ତ ମୈଶା ନ୍ୟଚ ଖରେ ଗୃହ୍ନେୟ ବୈଗ୍ଦା

ପୂର୍ବଦ୍ୱାର ବୃଷବନ୍ଧ, ଦକ୍ଷିଣ ଦ୍ୱାରେ ଗଜବନ୍ଧ ଧ୍ୱଜବନ୍ଧରେ ପଶ୍ଚିମଦ୍ୱାରେ ସିଂହ ବନ୍ଧରେ ଉତ୍ତର ଦ୍ୱାର ଧ୍ୱାଂକ୍ଷ ବନ୍ଧରେ ନୈର୍ଋତ କୋଣେ ଧୂମ୍ର ବନ୍ଧରେ ବାୟବ୍ୟକୋଣଶ୍ୱାନବନ୍ଧରେ ଐଶାନ୍ୟ-କୋଣ ଖର ବନ୍ଧରେ ଅଗ୍ନିକୋଣକୁ ଦ୍ୱାର କରିବା ବିଧେୟ ।

—ଘରର ରାଶି ନକ୍ଷତ୍ର ଓ ଶୁଭାଶୁଭ ଜ୍ଞାନ—

ଅଷ୍ଟାଭିର୍ଗୁଣିତଂ ପିଣ୍ଡଂ ଋଷ ଭାଗେଣ ହାରୟେତ
ଶେଷ ମୃକ୍ଷ ବିଜାନୀୟା ଦର୍ଶୟିନ୍ୟାଦ୍ଧ ଫଟେଣେତ ।

ମୂଳ ପିଣ୍ଡକୁ ଆଠ ଦ୍ୱାରା ଗୁଣି ସତାଇଶ ୨୭ ଦ୍ୱାରା ହରଣ କଲେ ଭାଗଶେଷ ଯାହା ରହିବ ସେ ଘରର ନକ୍ଷତ୍ର ହୁଏ ସେହି ନକ୍ଷତ୍ର ଅନୁସାରେ ରାଶି ହୁଏ ଯଥା—

୧ ଅଶ୍ୱିନୀ ୨ ଭରଣୀ ୩ କୃତ୍ତିକା—ମେଷ
୩ କୃତ୍ତିକା ୪ ରୋହିଣୀ ୫ ମୃଗଶିର—ବୃଷ
୫ ମୃଗଶିର ୬ ଆର୍ଦ୍ରା ୭ ପୁନର୍ବସୁ—ମିଥୁନ
୭ ପୁନର୍ବସୁ ୮ ପୁଷ୍ୟା ୯ ଅଶ୍ଳେଷା—କର୍କଟ
୧୦ ମଘା ୧୧ ପୂର୍ବା ଫାଃ ୧୨ ଉତ୍ତର ଫାଃ—ସିଂହ
୧ ଉତ୍ତର ଫାଃ ୧୩ ହସ୍ତା ୧୪ ଚିତ୍ରା—କନ୍ୟା
୧୪ ଚିତ୍ରା ୧୫ ସ୍ୱାତୀ ୧୬ ବିଶାଖା—ତୁଳା
୧୬ ବିଶାଖା ୧୭ ଅନୁରାଧା ୧୮ ଜ୍ୟେଷ୍ଠା—ବିଛା
୧୯ ମୂଳା ୨୦ ପୂର୍ବାଷାଢ଼ା ୨୧ ଉତ୍ତରାଷାଢ଼ା—ଧନୁ
୨୧ ଉତ୍ତରାଷାଢ଼ା ୨୨ ଶ୍ରବଣା ୨୩ ଧନିଷ୍ଠା—ମକର
୨୩ ଧନିଷ୍ଠା ୨୪ ଶତଭିଷା ୨୫ ପୂର୍ବଭାଦ୍ର—କୁମ୍ଭ
୨୫ ପୂର୍ବଭାଦ୍ର ୨୬ ଉତ୍ତରଭାଦ୍ର ୨୭ ରେବତୀ—ମୀନ

ଏହି କ୍ରମେ ନକ୍ଷତ୍ରରୁ ରାଶି ନିର୍ଣ୍ଣୟ କରିବ ।

ଗୃହକର୍ତ୍ତା ନକ୍ଷତ୍ର ଓ ରାଶି ସହିତ ଗୃହର ନକ୍ଷତ୍ର ଓ ରାଶି ମିଳାଇ ନାଗନାଡ଼ୀ ପୂର୍ଣ୍ଣବର୍ଣ୍ଣ ଓ ରାଜଯୋଟକ ଆଦି ବିଚାର କରିବ । କୃତ୍ତିକା ଆଦି ୨୭ ନକ୍ଷତ୍ରକୁ ସର୍ପାକାରରେ ତିନିଧାଡ଼ି ଅର୍ଥାତ୍ କର ନାଡ଼ି ମଧ୍ୟ ନାଡ଼ି ଓ ପୃଷ୍ଠ ନାଡ଼ିରେ ନ୍ୟାସ କରିବ । ସର୍ପ ରେଖାରେ ଏକ ଧାଡ଼ିରେ କର୍ତ୍ତା ଓ ଗୃହର ନକ୍ଷତ୍ର ପଡିଲେ ନାଗ ନାଡ଼ି ହୁଏ । ସେହି ବନ୍ଧରେ ଘର କରିବା ନିଷେଧ ।

## ନାଗନାଡ଼ୀ ନ୍ୟାସ

| | | | | | | | | |
|---|---|---|---|---|---|---|---|---|
| ୩ | ୮ | ୯ | ୧୪ | ୧୫ | ୨୦ | ୨୧ | ୨୬ | ୨୭ |
| ୪ | ୭ | ୧୦ | ୧୩ | ୧୬ | ୧୯ | ୨୨ | ୨୫ | ୧ |
| ୫ | ୬ | ୧୧ | ୧୨ | ୧୭ | ୧୮ | ୨୩ | ୨୪ | ୨ |

### ଗଣ ମିଳନ

ଅଶ୍ୱିନୀ ମୃଗଶିର ପୁଷ୍ୟା ପୁନର୍ବସୁ ସ୍ୱାତି ହସ୍ତେୟୋ । ଅନୁରାଧା ହର ରେବତ୍ୟା ଏତେଦେବ ଗଣେସ ତା । କୃତ୍ତିକା ମଘା ବିଶାଖା ଅଶ୍ଳେଷା ଶତ ତାରକା ଧନିଷ୍ଠା ଚିତ୍ରା ସଂଯୁକ୍ତା ଜ୍ୟେଷ୍ଠା ମୂଳାଚ ରାକ୍ଷସା, ରୋହିଣୀ ତ୍ରୀନ ପର୍ବାଣ ଯାମ୍ୟରୁଦ୍ର ସ୍ତଥେବଚ । ତ୍ରିଉତ୍ତରାଣୀ ବିଜ୍ଞାନଂ ମାନବାନାଂ ପ୍ରକୀର୍ତ୍ତିତା ।

ଅଶ୍ୱିନୀ ମୃଗଶିର ପୁଷ୍ୟା ପୁନର୍ବସୁ ସ୍ୱାତି ହସ୍ତାଅନୁରାଧାଶ୍ରବଣା ରେବତୀ ଏମାନେ ଦେବଗଣ । କୃତ୍ତିକା ମଘା ବିଶାଖା ଅଶ୍ଳେଷା ଶତଭିଷା ଧନିଷ୍ଠା ଚିତ୍ରା ଜ୍ୟେଷ୍ଠା ମୂଳା ଏମାନେ ରାକ୍ଷସଗଣ । ରୋହିଣୀ ପୂର୍ବାଫାଲ୍‌ଗୁନୀ ପୂର୍ବାଷାଢ଼ା ପୂର୍ବଭାଦ୍ରବିଜା ଆର୍ଦ୍ରାଉତ୍ତରା-ଫାଲ୍‌ଗୁନୀ ଉତ୍ତରାଷାଢ଼ା ଉତ୍ତରଭାଦ୍ର ଏମାନେ ନରଗଣ । ଏଥି-ମଧ୍ୟରେ ଜାଣିବୁଝି ଘର କରିବ ।

କଳହଂ ଦେବଦୈତ୍ୟାନାଂ ମୃତ୍ୟୁମାନବ ରାକ୍ଷସା
ଦେବ ମାନବୟୋର୍ମଧ୍ୟଂ ସ୍ୱଜାତୌଚ ଶୁଭଂଭବେତ୍ ।

ଗଣ ମିଳନ ମଧ୍ୟରେ ଦେବ ଅସୁର ହେଲେ ଘର କରିବନାହିଁ କଳହ ଜନ୍ମେ, ନର ଅସୁର ହେଲେ ମୃତ୍ୟୁ ଘଟେ । ଦେବ ଓ ମାନବ ହେଲେ ମଧ୍ୟମ ଫଳହୁଏ ଗଣ ସମାନ ହେଲେ ସର୍ବଶ୍ରେଷ୍ଠ ଫଳହୁଏ ।

### ରାଜପୋଟକ

ଏକରାଶୀ ଶୁଭଂଚୈବ ଶ୍ରେଷ୍ଠଂଚ ସମସପ୍ତକେ
ଚତୁର୍ଥ ଦଶମଂଚୈବ ତୃତୀୟେକ ଦଶେସ୍ତଥା ।

ଘରର ଓ ଘର କର୍ତ୍ତାର ଏକ ରାଶିହେଲେ ସର୍ବଶ୍ରେଷ୍ଠ ଫଳ ହୁଏ । ସମ ସପ୍ତ ହେଲେ ତିନିପାଦ ଫଳହୁଏ । ଚତୁର୍ଥ ଦଶମ ହେଲେ ମଧ୍ୟମ ଓ ତୃତୀୟ ଏକାଦଶ ହେଲେ ଏକପାଦ ଫଳ ହୁଅଇ ଅନ୍ୟାନ୍ୟ ହେଲେ ଅନିଷ୍ଟ ଫଳହୁଏ ।

## ଗୃହର ପରମାୟୁ ସାଧନ

ଅଷ୍ଟାଭିର୍ଗୁଣିତଂ ପିଣ୍ଡଂ ଷଷ୍ଠୀ ୭୦ ଭାଗେଣ ହାରୟେତ୍
ଶେଷମଂଶଂ ବିଜାନୀୟାଦ୍ ମାୟୁରେହସ୍ୟ କୋବିଦଃ ।

ମୂଳପିଣ୍ଡକୁ ଆଠଦ୍ୱାରା ଗୁଣି ୭୦ ଦ୍ୱାରା ହରିବ । ଭାଗଶେଷ ଯାହା ରହିବ ସେତେବର୍ଷ ଘରର ପରମାୟୁ ଅଟେ । ଶିଳ୍ପକାର ଘର ଆୟୁବ୩୨ର୍ଷବ୪୪ର୍ଷଓବ୫୭ର୍ଷକୁବ୍ୟବହାରକରୁଥିବାରଦେଖାଯାଏ

ପରମାୟୁଚ ବର୍ଷଣାଂ ପଞ୍ଚଭିଭାଗେଣ ହାରୟେତ୍
ଶେଷାଂଶେ ଅସ୍ତିତୋ ଯବ ପଞ୍ଚଭୂତାଦିକଂ କ୍ରମାତ୍

ଘରର ପରମାୟୁ ଯେତେବର୍ଷ ହୋଇଥିବ ତାହାକୁ ୫ ଦ୍ୱାରା ଭାଗ କରିଲେ ଶେଷ ଅଂଶ ଘରର ନାଶ ହୁଏ । ଯଥା—୧ ପୃଥିବୀ ୨ ଆପ ୩ ତେଜ ୪ ବାୟୁ ୫ ଆକାଶ ।

## ଗୃହର ନଷ୍ଟ ବିଗ୍ରହ

ପୃଥିବୀ ଆପ ତେଜାଂସି ବାୟୁରାକାଶଏବଚ
ପଞ୍ଚାୟୁର୍ଜାୟତେ ତସ୍ୟ ଜଗନ୍ନବାହାଦିକଂ କ୍ରମାତ୍ ।

ଘରର ପରମାୟୁ ବର୍ଷକୁ ପଞ୍ଚମହାଭୂତ ୫ ରେ ହରିତ ଶେଷାଙ୍କ ଏକ ରହିଲେ ପୃଥିବୀ ହୁଏ । ସେ ଘର ସହଜରେ ନଷ୍ଟ ହୁଏ ନାହିଁ । ୨ ରହିଲେ ଜଳଦ୍ୱାରା ସେହି ଘର ନଷ୍ଟ ହୁଏ । ୩ରହିଲେ ଅଗ୍ନି ଦାହରେ ଘର ପୋଡ଼ିଯାଏ । ୪ରହିଲେବାୟୁଦ୍ୱାରା ଘରଟି ଭାଙ୍ଗିପଡ଼େ ୫ ରହିଲେ ବଜ୍ରପଡ଼ି ନଷ୍ଟ ହୁଏ । ପୃଥ୍ୱୀ ଆପ ବାୟୁ ଏହି ତିନିଟି ସ୍ଥଳରେ ଘର ନିର୍ମାଣ କରାଯାଏ ଅଗ୍ନି ଓ ଆକାଶ ଏହି ଦୁଇଟିରେ ଘର କରାଯାଏ ନାହିଁ ।

## ଦିଗନାଶର ପ୍ରମାଣ

ଆୟୁର୍ବଲଂଚ ସଦନେ ଚତୁର୍ଭାଗେନ ହରୟେତ୍
ଶେଷମାଂଶଂ ବିଜାନୀୟାତ୍ ଭଗ୍ନାଦିଷ ଯଥାକ୍ରମମ୍ ।

ଘରର ପରମାୟୁକୁ ୪ ଦ୍ୱାରା ହରିବ ଶେଷ ଅଂଶ ଯାହା ରହିବ ତାହା ଘରର ଦିଗନାଶ ଅଟେ । ୧ ରହିଲେ ଘରଟି ପୂର୍ବ ଦିଗରୁ ବିନଷ୍ଟ ହୁଏ । ୨ ରହିଲେ ଦକ୍ଷିଣ ଦିଗରୁ ୩ ରହିଲେ ପଶ୍ଚିମ ଦିଗରୁ ୪ ରହିଲେ ଉତ୍ତର ଦିଗରୁ ଭାଙ୍ଗି ପଡ଼େ

## —ଉଦାହରଣ—

+ମିଶାଣ ଯୁକ୍ତଚିହ୍ନ—ବିଯୁକ୍ତ ଚିହ୍ନ×ଗୁଣନ ଚିହ୍ନ ।
÷ହରଣଚିହ୍ନ=ସମାନ ଚିହ୍ନ.∴ଅତଏବ ଚିହ୍ନ ।
ଦୀର୍ଘ ହା ୨୧।୨୩ ଅଙ୍ଗୁଳ ପ୍ରସ୍ଥ ହା ୧୫।୧୯ ଅଙ୍ଗୁଳ
(ଏକହାତର ପରିମାଣ ୨୪ ଅଙ୍ଗୁଳ)
ଦୀର୍ଘ ୨୧×୨୪=୫୦୪+୧୩=୫୧୭ ଅଙ୍ଗୁଳ ।
ପ୍ରସ୍ଥ ୧୫×୨୪=୩୬୦+୧୯=୩୭୯ ଅଙ୍ଗୁଳ ।
∴୫୧୮×୩୭୯=୧୯୫୯୪୩ ମୂଳପିଣ୍ଡ ଗୃହର ।

ପିଣ୍ଡ୧୯୫୯୪୩÷ବନ୍ଧ ୮=୨୪୪୯୨ଭାଗଫଳରେକାର୍ଯ୍ୟନାହିଁ ଭାଗାବଶେଷ ୭ ଏଣୁ ଗଜବନ୍ଧ ହଣାଗଲ ।

ଏହି ମୂଳପିଣ୍ଡ୧୯୫୯୪୩×୮=୧୫୬୭୫୪୪—୨୭=ଭାଗଫଳ ୫୮୦୫୭ ଭାଗଶେଷ ୫ ଏଣୁ ମୃଗଶିରା ନକ୍ଷତ୍ର ମିଥୁନ ରାଶି ଗୃହର ହେଲା ।

ଧରନ୍ତୁ, ଗୃହକର୍ତ୍ତାର ହସ୍ତା ୧୩ କନ୍ୟା ୬ ରାଶି ତେବେ ନାଗନାଡ଼ି ନାସ୍ତି ଚତୁର୍ଥ ଦଶମ ରାଶିହେତୁ ରାଜଯୋଟକ ହେଉଅଛି । ଏଥିରେ ଗୃହ କରିବା ଉଚିତ ଉଭୟଙ୍କର ଦେବଗଣ ଏଣୁ ବିଶେଷ ଶୁଭଅଟେ । ମୂଳପିଣ୍ଡରେ×୮=୧୫୬୭୫୪୪—୬୦=ଭାଗଫଳ ୨୬୧୨୫ ଭାଗଶେଷ ବ୪୪ର୍ଷ ଗୃହର ପରମାୟୁ ।

ପରମାୟୁ ବ୪୪ର୍ଷ—୧୨=ଭାଗଫଳ୩ଅବଶେଷ ୮ ଗୃହରଆୟ ।
ନକ୍ଷତ୍ର—୮=ଭାଗଫଳ ୦ ଅବଶେଷ ୫ ଏହା ଗୃହର ବ୍ୟୟ ।
ପୁନଶ୍ଚ ପରମାୟୁ ବ୪୪ର୍ଷ÷୫=୮ ଅବଶେଷ ୪ ବାୟୁଦ୍ୱାରା ନଷ୍ଟ ବୋଲି ଜାଣିବ ।

ପରମାୟୁ ୪୪÷୪=୧୧ ଅବଶେଷ ୦ ଉତ୍ତର ଦିଗୁନାଶ । ୧ ରହିଲେ ପୂର୍ବ ୧ ପଶ୍ଚିମ ୩ଦକ୍ଷିଣ ୪ ରହିଲେ ଉତ୍ତର ଦିଗ ହୁଏ । ଗୃହ ନକ୍ଷତ୍ର୫×୪=୨୦—ଗୃହ ୯=୨ଅବଶେଷ ୨ଚନ୍ଦ୍ରଗ୍ରହହେତୁ ଫଳଭୋଗ ଏଥିରେ ଗୃହ କରିବ । ଶୁଭଗ୍ରହ ଚନ୍ଦ୍ର ବୃହସ୍ପତି ଶୁକ୍ର ହେଲେ ଗୃହ କରିବ ।

ଗୃହର ପିଣ୍ଡ ୧୯୫୯୪୩ × ଗୃହ ନକ୍ଷତ୍ର ୫ = ୯୭୭୯୧୫ ÷ ୮ = ୧୨୨୧୪୬୪ ଭାଗାବଶେଷ ୩ ନାଗ ଚକ୍ରକ ।

ଏହାର ଗଣନାରେ ହେଲ ଗଜବନ୍ଧ ୭ ପରମାୟୁ ବର୍ଷ ଗୃହ-ନକ୍ଷତ୍ର ୫ ମୃଗଶିରା ନକ୍ଷତ୍ର ମିଥୁନ ରାଶି ଆୟ ୮ ବ୍ୟୟ ୫ ଗ୍ରହଚନ୍ଦ୍ର ୨ ନାଗ ୩ ଚକ୍ରକ ।

## ପଞ୍ଚମ ପରିଚ୍ଛେଦ

### ନାଗ ପ୍ରମାଣ

୧—ଭାଦ୍ରାଦୌ ପ୍ରାକଶିରସ୍ତ୍ତ ମାର୍ଗାଦୌ ଦକ୍ଷିଣେ ଶିରଂ
ଫାଲଗୁନେ ଶିର ପଶ୍ଚିମ୍ୟାଂ ଜ୍ୟେଷ୍ଠାଦ୍ରୌ ଚୈତ୍ତରେଶିରଃ
ତ୍ରିମାସୋ ବର୍ତ୍ତତେ ନାଗଃ ଭ୍ରମଣଂ ବାସ୍ତୁ ମଣ୍ଡଳେଃ ।

୨—ଭାଦ୍ରାଦ ତ୍ରିଭମାସ୍ୟାନ୍ତ ଶିରୋନାଗସ୍ତ ପର୍ବକଂ
ଉଦରଂ ଦକ୍ଷିଣେ ଚୈବ ପୃଷ୍ଠେ ଶ୍ଚୈବାୟୁ ପଶ୍ଚିମେ
ଐଶାନ୍ୟେ ଲଙ୍ଗୁଳଂ ଜ୍ଞେୟଂ ତ୍ରିମାସେ ନାଗନସ୍ତଳଃ ।

୩—ମାଗାଦ୍ରତ୍ରିଭମାସାନ ଶିରୋ ନାଗସ୍ୟ ଦକ୍ଷିଣେ
ଉଦରଂ ପଶ୍ଚିମଂ ଚୈବ ପୃଷ୍ଠୋ ଚୈବାୟୁରୈତ୍ତରେ
ଆଗେୟେ ଲଙ୍ଗୁଳଂ ଚୋଷାଂ ତ୍ରିମାସୋ ନାଗନସ୍ତଳଃ

୪ ଜ୍ୟେଷ୍ଠାଦ ତ୍ରିଭମାସାନ ଶିରୋ ନାଗସ୍ତ ପଶ୍ଚିମେ
ଉଦରଂ ଉତ୍ତରଂ ଚୈବ ପୃଷ୍ଠୋ ଚୈବାୟୁ ପୂର୍ବକଂ
ନୈଋତେ ଲଙ୍ଗୁଳଂ ଚେଷାଂ ତ୍ରିମାସୋ ନାଗନସ୍ତଳଃ

୫—ଜ୍ୟେଷ୍ଠାଦ ତ୍ରିଭମାସାନ ଶିରୋନାଗସ୍ୟ ଚୈତ୍ତରେ
ଉଦରଂ ପୂର୍ବକଂ ଚୈବ ପୃଷ୍ଠେ ଚୈବ ଦକ୍ଷିଣେ
ବାୟବ୍ୟେ ଲଙ୍ଗୁଳଂ ଚୈବ ତ୍ରିମାସୋ ନାଗନସ୍ତଳଃ

୬—ପାଦପ୍ରଷ୍ଠ ଘର ପରିମାଣ ତାକୁ ମିଶାଇ ବେନ ୨ଗୁଣାଣ ବ ସୁ ୮ ଭାଗ ଦେଇ ହରିଆଣ ନାଗ ଅଷ୍ଟଚାଳ ଚକ୍ରକରେ ଜାଣ ।

୭—ତାଳମେକଂ ଫଣାଶିରେ ଦ୍ୱିତୀୟେ କଣ୍ଠକଂ ତଥା, ହିଭ-
ତାଳ ହୃଦୟେ ଚୈବ ଚତୁର୍ଥେ ଉଦରଂ ଭବେତ ନାଭଃ
ପଞ୍ଚମତାଳଞ୍ଚ ଜଘନେ ଷଷ୍ଠ ତାଳକଂ ଆଣ୍ଠୁ ସପ୍ତମତାଳଞ୍ଚ
ପୁଚ୍ଛେ ଅଷ୍ଟମତାଳକଃ

୮—ଶିରେଖନନ ଭବେ ମୃତ୍ୟୁଃ କଣ୍ଠେ ପୁତ୍ରକ୍ଷୟଂ ଭବେତ
ହୃଦୟେ ଧନ ମାପ୍ନୋତି ଗୃହୋଦରେସ୍ୟାର୍ଥେ ସମ୍ପଦଃ
ନାଭଚ ସୁଖମାପ୍ନୋତି ଜାନୁଜଘେସୁଖୀନରଃ
ଆଣ୍ଠୁ ଶ୍ରୀ ଧନ ନାଶାୟ ପୁଚ୍ଛେ ସୁତକ୍ଷୟଂ ଭବେତ
ନାନା ଦୁଃଖ କଷ୍ଟିଚୈବ ଭାର୍ଯ୍ୟା ଚ ମରଣଂ ଧ୍ରୁବଂ
ଆଣ୍ଠୁ ଅଗ୍ନି ଭୟଂ କ୍ଳେଶଂ ପ୍ରବାସିଂଚ ଋଣୀ ଭବେତ
ପୁଚ୍ଛଂ ବନ୍ଧ କଷ୍ଟଂ ଚ ସ୍ଥାନତ୍ୟାଗୋ ପ୍ରବାସକଃ

୯—ପୂର୍ବଶିର ଶୁତୋନାଗ ଦକ୍ଷିଣେ ଗୃହ କାର୍ଯ୍ୟ କାରୟେତ
ଦ୍ୱାରଂଚ ଉତ୍ତରେ ପ୍ରୋକ୍ତ ଗୃହ କାର୍ଯ୍ୟ ସଦ ବୁଧୈଃ

୧୦—ଦକ୍ଷିଣୋଽପି ଶିରେନାଗ ପଶ୍ଚିମେ ଗୃହ କାରୟେତ
ଦ୍ୱାରଞ୍ଚ ପୂର୍ବକଂ ଚୈବ ନାଗ ଶୁତୋ ପ୍ରଦୃଶ୍ୟତେ

୧୧—ପଶ୍ଚିମେଽପି ଶିରେନାଗ ଉତ୍ତରେ ଗୃହ କାରୟେତ
ଦ୍ୱାରଂଚ ଦକ୍ଷିଣଂ ଚୈବ ନାଗସ୍ୟ ଶନ୍ତୟେଦ୍ ବୁଧୈଃ

୧୨—ଉତ୍ତରେଽପି ଶିରେ ନାଗ ପୂର୍ବେଣ ଗୃହ କାରୟେତ
ଦ୍ୱାରଶ୍ଚ ପଶ୍ଚିମେ ଚୈବ ନାନା ସୁଖ ପ୍ରଦୃଶ୍ୟତେ

ମତାନ୍ତରେ ଶୁଭଦେବା ବଧି

ଦାବପ୍ରତ୍ୟ ଚନାଶୋ ଭବତିଚ ଖନନେ ମସ୍ତକେନାଗରାଜ୍ଞା
ଶ୍ରୀ ସମ୍ପତ୍ତି ପ୍ରଭୁତ୍ୱଂ ଯଦ ହୃଦକଠରେ ସର୍ବ ଭୋଗୈଚ୍ଛପେତ
ନାଭୌକ୍ଷୀଣଂ ଭବତେ ରକ୍ତିବସ୍ତୁ ଶୁଭଦୋ ଗୁହ୍ୟଦେଶ ଚ
ରୋଗଃ ଜାନୌ ଚ,ର୍ଦ୍ଧେ ପ୍ରବାସୀକ୍ଷୟ ମପିଜଘନେ ପୁଚ୍ଛଦେଶେ-
ଽତ୍ରୋଧ

ନାଗର . ସ୍ତକରେ ଶୁଭଦେଲେ ସ୍ତ୍ରୀ ଓ ପୁତ୍ର ନାଶ କରେ
କଣ୍ଠରେ ଶୁଭ ଦେଲେ ବିପଦଘଟେ । ହୃଦୟରେ ଶୁଭଦେଲେ ଧନ

ଲାଭକରାଏ । ଉଦରେ ଭୋଗବାନ ଓ ଲାଭବାନ ହୁଅନ୍ତି । ନାଭିରେ ଶତ୍ରୁଜାତ କରାଏ ଗୁହ୍ୟ ଦେଶରେ ଶୁଭଦେଲେ ଶତ୍ରୁ ଉପଗତ ହୁଅନ୍ତି ଜାନୁରେ ପ୍ରବାସ କରାଏ ଜଙ୍ଘରେ ଅପମୃତ୍ୟୁ କରାଏ ପୁଚ୍ଛରେ ଶୁଭଦେଲେ ଅତି ଅମଙ୍ଗଳ କରାଇବାର କେତେକ ଶିଳ୍ପକାର କହିଅଛନ୍ତି ।

### ଅଷ୍ଟବର୍ଗ ନିୟମ

ଅ, କ, ଚ, ଟ, ତ, ପ, ଷ, ଶ କହି ଓ ବର୍ଗବିଶେଷ ପକ୍ଷୀ ମାର୍ଜାର ସିଂହ ଶୋଣେହ ଅହି ମୂଷା ଗଜ ମେଷ ଅଗ୍ନି କୋଣରୁ ବର୍ଗ ବସାଇ ଆଣିବ ।

ପୂର୍ବ

| | |
|---|---|
| ମେଷ | ଗରୁଡ଼ |
| ଗଜ | ମାର୍ଜାର |
| ମୂଷିକ | ସିଂହ |
| ସର୍ପ | ଶ୍ୱାନ |

ଉତ୍ତର (left) — ଦକ୍ଷିଣ (right)

ପଶ୍ଚିମ

| | |
|---|---|
| ଅ, ଆ, ଇ ଉ | ଏ ଗରୁଡ଼ବର୍ଗ |
| କ, ଖ, ଗ, ଘ, ଙ | ଏ ମାର୍ଜାର ବର୍ଗ |
| ଚ, ଛ, ଜ, ଝ, ଞ | ଏ ସିଂହ ବର୍ଗ |
| ଟ, ଠ, ଡ, ଢ, ଣ | ଏ ଶ୍ୱାନ ବର୍ଗ |
| ତ, ଥ, ଦ, ଧ, ନ | ଏ ସର୍ପ ବର୍ଗ |

ପ, ଫ, ବ, ଭ, ମ — ଏ ମୂଷିକ ବର୍ଗ
ଯ, ର, ଲ, ବ, ଶ — ଏ ଗଜ ବର୍ଗ
ଷ, ସ, ହ, ଳ, ଯ — ଏ ମେଷ ବର୍ଗ

ସିଂହ ସର୍ପୌ ଶୁଭୌ ହସ୍ତୀ ବିଡ଼ାଳୌ ସୁଖ ବର୍ଦ୍ଧକୌ
ପୂଜା ପ୍ରଦାବାଖୁ ମଷୌ ପକ୍ଷି ଶ୍ୱାନୌ ତଥୈବଚ
ପକ୍ଷୀ ସର୍ପୌ ସିଂହ ଶ୍ୱାରେ ବିଡାଳ ମୂଷିକୌ ତଥା
ଗଜ ସିଂହୌ ତଥାଜ୍ଞେୟୌ ମେଷ ଶ୍ୱାନୌ ଶୁଭୌନଚ
ସିଂହ ଓ ସର୍ପ ବର୍ଗ ଏକତ୍ର ହେଲେ ଶୁଭଫଳ ଦିଏ
ହସ୍ତୀ ଓ ମାର୍ଜାର ଏକତ୍ର ହେଲେ ସୁଖ ମିଳେ ।
ମୂଷା ଓ ମେଷ ଏ ଦୁହେଁ ସମ୍ମାନ ଲାଭ କରନ୍ତି

ଗରୁଡ଼ ଓ ଶ୍ୱାନ ବର୍ଗଙ୍କର ଷଡ଼ାଷ୍ଟ ଲକ୍ଷଣ ଅଟେ ଗରୁଡ଼ ଓ ସର୍ପ ବର୍ଗରେ ବିନାଶ ହୁଅନ୍ତି । ମାର୍ଜାର ଓ ମୂଷିକ ବର୍ଗରେ ମୃତ୍ୟୁ ଘଟେ ଗଜ ଓ ସିଂହ ବର୍ଗରେ ଶତ୍ରୁଭାଵ ଜନ୍ମେ ମେଷ ଓ ଶ୍ୱାନ ଏହି ଦୁଇବର୍ଗ ହେଲେ ଅତି ଅମଙ୍ଗଳ କରାଏ ।

କୁଣ୍ଡଳାକୃତି ନାଗ

ପୂର୍ବଭାଗେ ଶିରସ୍ତସ୍ୟ ଉତ୍ତରେ ପୃଷ୍ଠ ମେବଚ
ପଶ୍ଚିମେ ତୁ ତଥ୍ୟ ପୁଚ୍ଛଂ ଦକ୍ଷିଣେ କ୍ରୋଡ଼ାମୁଚ୍ୟତେ

ଯେଉଁ ତିନିମାସରେ ନାଗର ଶିର ପୂର୍ବ ଦିଗକୁ ରହେ ଅର୍ଥାତ୍ ଭାଦ୍ରାଦି ତିନି ମାସରେ ନାଗର ପୃଷ୍ଠ ଭାଗ ଉତ୍ତର ଦିଗକୁ ପୁଚ୍ଛ ପଶ୍ଚିମ ଦିଗକୁ ଓ କ୍ରୋଡ଼ ଦକ୍ଷିଣ ଦିଗକୁ ରହେ ।

କୁଣ୍ଡଳ ନାଗ

ନାଗେଣ ମଣ୍ଡଳାକାରଂ ବାସ୍ତୁଶାଂ ପରିବେଷ୍ଟିତଂ
ତତ୍ଜ୍ଞାତ୍ୱା ପ୍ରତିପେତ୍ ସ୍ତମ୍ଭଂ ବେଦ ମଣ୍ଡପସଦୃଶ୍

ନାଗ ମଣ୍ଡଳାକାର ହୋଇ ବାସ୍ତୁଭୂମିକୁ ପରିବେଷ୍ଟନ କରି ରହିଥିଲେ ସୁବିଧା ସ୍ଥଳରେ ସ୍ତମ୍ଭାରୋପଣ କରି ପାରିବ ଏଥିରେ କୌଣସି ତାଳ ନିୟମ ନାହିଁ ।

ନବ ଭାଗ ବାସ୍ତୁ କ୍ଷେତ୍ରଂ କୃତ୍ୱାଭାଗ ଦ୍ୱୟଂ ତତଃ
ଅର୍ଦ୍ଧ ଭାଗ ଦ୍ୱୟଂ ତକ୍ତ୍ୱା ମଧ୍ୟେ ନାଗଃ ପ୍ରକୀର୍ତ୍ତିତଃ

ବାସ୍ତୁ ଭୂମିକୁ ନବ ଭାଗ କରିବ ତହିଁରୁ ଭାଗେକ ଆଣି ତିନଭାଗ କରିବ ତାହାପରେ ଦୁଇଭାଗକୁ ଛାଡ଼ି ମଧ୍ୟ ଭାଗକୁ ନାଗର ପରିମାଣ ଘେନିବ ।

ବସୁଭାଗ କୃତ୍ୱା ଭୂମିଃ ପ୍ରଥମେ ଫେନକ ଭବେତ୍
ଦ୍ୱିତୀୟେ କଣ୍ଠକଂ ଚୈବ ତୃତୀୟେ ହୃଦୟଂ ତଥା
ଚତୁର୍ଥ ଭାଗେ କୁକ୍ଷିଃସ୍ୟାତ୍ ପଞ୍ଚମେ କଟି ଭାଗକଂ
ଷଷ୍ଠେଚ ଜାନୁ ଭାଗେଷ୍ଟ ସପ୍ତାଷ୍ଟେ ପୂଛମୁଚ୍ୟତେ

ବାସ୍ତୁ ଭୂମିକୁ ଆଠଭାଗ କରିବ ପ୍ରଥମ ଭାଗ ନାଗର ଫେଣ ଦ୍ୱିତୀୟ ଭାଗ କଣ୍ଠ, ତୃତୀୟ ଭାଗ ହୃଦୟ ଚତୁର୍ଥ ଭାଗ ଉଦର ପଞ୍ଚମ ଭାଗ କଟୀ ଷଷ୍ଠଭାଗ ଜାନୁ ସପ୍ତମ ଓ ଅଷ୍ଟମ ଭାଗ ନାଗର ପୁଚ୍ଛ ହୁଏ ।

ଗ୍ରାମେଷୁ ଦଣ୍ଡା କୃତିରେବ ନାଗଃ
ଦେବାଳୟେ ବାମଂ ମଣ୍ଡପାଦୌ
ପ୍ରାଚୀ ନବାସେ ଚତୁରେସ୍ର କେତ
ସକୁଣ୍ଡଳାକାର ଇତି ପ୍ରସିଦ୍ଧ

ଗ୍ରାମାଦିମାନଙ୍କରେ ନାଗ ଦଣ୍ଡାକାର ଧାରଣ କରିଥାଏ ଦେବାଳୟ ମଠ ପ୍ରଭୃତି ମଣ୍ଡପ ଚତୁଷ୍ଟାଦି ଗୃହରେ ନାଗ ମଣ୍ଡଳାକୃତ ହୁଏ ।

ବାମନ ଭ୍ରମତେ ନାଗଃ ମାଧ୍ୟାନଂ ଚ ବିଭିହିତଃ
ହୃଦ୍ୟେତୌ ପୁଚ୍ଛଶିରସିଚ ବର୍ଜୟେତ ଦ୍ୱାର ମନ୍ଦିରଂ

ନାଗ ସର୍ବଦା ବାମ ଭାଗରେ ଭ୍ରମଣ କରୁଥାଏ । ନାଗର ହୃଷ୍ଟ ପୁଚ୍ଛ ଓ ଶିରକୁ ବର୍ଜନ କରି ଅନ୍ୟ ସ୍ଥାନରେ ମନ୍ଦିର ଦ୍ୱାର କରିବା କର୍ତ୍ତବ୍ୟ ।

ପୃଚ୍ଛେଣ ନିଳାନାଶଃ ସ୍ୟାତ ପୃଷ୍ଟେଷୁ ଦାରସୂତ କ୍ଷୟଂ
ଶିରସ୍ୟାତ୍ମାକ୍ଷୟଂ ବଦ୍ୟାତ କୁକ୍ଷୌଚ ସର୍ବ ସମ୍ପଦଃ

ନାଗର ଲାଙ୍ଗୁଳରେ ଶୁଭ ଦେଲେ ଧନ ହାନି ହୁଏ । ପୃଷ୍ଠ ଦଣରେ ସ୍ତ୍ରୀ ଓ ପୁତ୍ରମାନେ ନଷ୍ଟହୁଅନ୍ତି ମସ୍ତକରେ ନିଜର ଆତ୍ମାକ୍ଷୟ ହୁଏ କୋଡ଼ ଭାଗରେ ଶୁଭ ଦେଲେ ସମସ୍ତ ସମ୍ପତ୍ତି ବିନଷ୍ଟ ହେବାର ଶାସ୍ତ୍ରୋକ୍ତ ଅଛି ।

ବୁଧୋ ବିମ୍ବତ୍ରୟାଂକୁର୍ଯ୍ୟା ତ୍ତିର୍ଯ୍ୟ ରେଖାଶ୍ଚ ଚତୁଷ୍ଟୟମ୍
ଶ୍ୱିନ୍ୟାଦୀନି ବୈଭାନି ଯଥାକ୍ରମଂ ଲଖେତ୍ ଧ୍ରୁବମ୍

ଗୃହ କର୍ତ୍ତିକା ଚକ୍ର କରିବାକୁ ଗଲେ ପ୍ରଥମେ ତିନିଗୋଟି ବିମ୍ବ କରିବ ତା ମଧ୍ୟରେ ଚାରିଗୋଟି ଲମ୍ବାକୃତିରେ ସରଳ ରେଖା ଦେବ ତହିଁରୁ ଜାତହେବା କୋଠରିମାନଙ୍କରେ ଅଶ୍ୱିନୀ ଠାରୁ ଆରମ୍ଭ କରି ସତାଇଶ ଗୃହରେ ସତାଇଶ ନକ୍ଷତ୍ର ବସାଣ କରି ଶୁଭାଶୁଭ ଫଳ ଗ୍ରହ ଅବସ୍ଥିତି ଅନୁସାରେ ଜାଣିବ । ଏହି ଗୃହ କର୍ତ୍ତିକା ଚକ୍ର ପୁସ୍ତକର ଶେଷରେ ଚକ୍ର ବସାଣ ଠାରେ ଅଙ୍କନ କରାଯାଇଅଛି ।

ଊର୍ଦ୍ଧ୍ୱଭଂ ଶୁଭଦଂ ପ୍ରୋକ୍ତମଧୋଭଂ ଚ ବିନନ୍ଦିତଂ
ଗ୍ରହୈର୍ଯୁତଚ ରେଖାସୁ ସଂସ୍ଥିତା ଗୃହକର୍ତ୍ତିକା

ଗୃହ କର୍ତ୍ତିକାର ରେଖା ମାନଙ୍କରେ ନବଗ୍ରହ ବସାଇବ ଊର୍ଦ୍ଧ୍ୱ ରେଖାରେ ଗ୍ରହମାନେ ନଥିବେ ତେବେ ଶୁଭାଶୁଭ ଜାଣିବ ।

ତଦ୍ରେଖା ସଂସ୍ଥାତେ ଭାନୌ ଭୟଂ ରାଜ୍ଞୋ ବିନର୍ଦ୍ଦିଶେତ୍
ମଙ୍ଗଳେ ଭୟ ମାପ୍ନୋତି ବୁଧେସୁତଃ ବିନାଶନମ୍
ଗୁରୌ ଭୟଂ କବଃ ହାନିଃ ମନ୍ଦେ କ୍ଷୟଂ ଚଜାୟତେ
ରାହୌ ଅପମୃତ୍ୟୁ କୁର୍ଯ୍ୟାତ୍ କେତୌ କୁଳ ବିନାଶନମ୍

ରବି ରହିଥିବା ରେଖାରେ ରାଜଭୟ ହୁଏ । ମଙ୍ଗଳ ରେଖାରେ ଅଗ୍ନିଭୟ କରାଯାଏ, ବୁଧରେ ପୁତ୍ରହାନି ବୃହସ୍ପତି ରେଖାରେ ଭୟ ଶୁକ୍ର ରେଖାରେ ହାନି ଶନି ରେଖ ତେ ଧନକ୍ଷୟ ରାହୁ ରେଖାରେ ଅପମୃତ୍ୟୁ ଓ କେତୁ ରେଖାରେ କୁଳନାଶ କରିବାର ସୂଚନା ମିଳେ । ତେଣୁ ବିଗ୍ରହରେ ଗ୍ରହଥିବା ରେଖା ନକ୍ଷତ୍ର ବର୍ଜ୍ଜନ କରି ଶୁଭଦେବ ।

## ଷଷ୍ଠ ପରିଚ୍ଛେଦ

### ଗୃହ ନିର୍ମାଣର ଦିଗ ବ୍ୟବସ୍ଥା

ମେଷସିଂହଧନୁଷାଂ ଚ ପ୍ରାଚୀଶାଳା ପ୍ରଶସ୍ୟତେ
ଗୃହସ୍ୟ ପଶ୍ଚିମେ ଦ୍ୱାରେ ଗୃହୀସ୍ୟାତ୍ ପୂର୍ବତୋ ମୁଖଃ ।

ମେଷ ସିଂହ ଧନୁ ଏ ତିନିରାଶିର ପୂର୍ବଦିଗକୁ ମନ୍ଦିରକରିବ । ଦ୍ୱାର ପଶ୍ଚିମଦିଗକୁ ହେବ ଗୃହୀ ପୂର୍ବମୁଖହୋଇ ଗୃହଭିତରେ ପ୍ରବେଶ କରିବ ।

ବୃଷ କନ୍ୟା କର୍କଟେସ୍ତୁ ଦକ୍ଷିଣ ଦିଶିସଂସ୍ଥିତାଃ
ମନ୍ଦିର ସ୍ୟାତ୍ତରେ ଦ୍ୱାରେ ଗୃହସ୍ଥୋ ଦକ୍ଷିଣୋନ୍ମୁଖଃ

ବୃଷ କନ୍ୟା କର୍କଟ ଏ ତିନି ରାଶିର ଗୃହ ଦକ୍ଷିଣ ଦିଗକୁ କରିବ ଦ୍ୱାର ଉତ୍ତର ଦିଗକୁ ହେବ, ଯେପରିକି ଗୃହସ୍ଥ ଦକ୍ଷିଣ ମୁଖ ହୋଇ ଗୃହରେ ପ୍ରବେଶ କରିବ ।

ମୀନାଳି ମିଥୂନଶ୍ଚୈବ ଗୃହଉତ୍ତର ଦିଶିସଂସ୍ଥିତାଃ
ଗୃହସ୍ୟ ଦକ୍ଷିଣଦ୍ୱାରେ ଗୃହୀସ୍ୟାଦୁତ୍ତରେମୁଖଃ ।

ମିଥୂନ ବିଛା ଓ ମୀନ ରାଶିର ଘର ଉତ୍ତର ଦିଗକୁ କରିବ । ଦ୍ୱାର ଦକ୍ଷିଣ ଦିଗକୁ ହେବ । ଘରକର୍ତ୍ତା ଉତ୍ତର ଦିଗକୁ ମୁଖକରି ଘର ମଧ୍ୟରେ ପ୍ରବେଶ କରିବ ।

ତୁଳା ମକର କୁମ୍ଭସ୍ତୁ ପଶ୍ଚିମଦିଶି ସଂସ୍ଥିତାଃ
ମନ୍ଦିର ପ୍ରାଚୀଦିଗସ୍ୟେ ଗୃହସ୍ଥୋ ପଶ୍ଚିମୋନ୍ମୁଖଃ ।

ତୁଳା ମକର କୁମ୍ଭ ରାଶିର ପଶ୍ଚିମ ଦିଗକୁ ଘର କରିବ ଦ୍ୱାର ପୂର୍ବଦିଗକୁ ହେବ । ଘର ସ୍ୱାମୀ ଓ ଘରର ପରିବାର ବର୍ଗ ପଶ୍ଚିମ ଦିଗକୁ ମୁଖକରି ଘରରେ ପ୍ରବେଶ କରିବ ।

### ଦ୍ୱାର ଲକ୍ଷଣ

ଦ୍ୱାରବାସ୍ତୁ ପ୍ରବକ୍ଷାମି ଦିଗାନାଂଚ ଶୁଭାଶୁଭଂ
ପୂର୍ବାଦି ନନ୍ଦଶଃକ୍ଷେତ୍ର ମଷ୍ଟାନାଂଚ ଯଥାକ୍ରମଂ ।

ପୂର୍ବାଦି ପ୍ରତ୍ୟେକ ଦିଗ ଓ ଦିଗମାନଙ୍କରେ ବାସ୍ତୁମାନଙ୍କ ମଧ୍ୟରେ ଯେଉଁ ଦ୍ୱାର ଠିକ୍ କରାଯାଏ ସେହି ବାସ୍ତୁ ଗୁଡ଼ିକରେ ସର୍ବ

ପ୍ରଥମେ ଆଠଭାଗ କରି କ୍ରମାନୁସାରେ ନିମ୍ନ ଉକ୍ତ୍ୟାନୁସାରେ ଭାଗର ଶୁଭାଶୁଭ ବିଚାର କରିବ ।

ଐଶାନ୍ୟାଦି ଲିଖେତ୍ ପୂର୍ବମାଗ୍ନେୟ୍ୟା ଦକ୍ଷିଣଂ ତଥା
ନୈର୍ଋତାତ୍ ପଶ୍ଚିମଂ ଚୈବବାୟବ୍ୟେଂ ଦେବଗୃହୋତ୍ତରଂ

ଦ୍ୱାର ପୂର୍ବଦିଗକୁ କଲେ ଐଶାନ୍ୟକୋଣଠାରୁ ପଶ୍ଚିମ-ଦିଗରେ ନୈର୍ଋତ କୋଣଠାରୁ ଉତ୍ତର ଦିଗରେ ଦ୍ୱାର ହେଲେ ବାୟବ୍ୟ କୋଣଠାରୁ ଗଣନ କରିବ ।

ଅଗ୍ନିର୍ବହ୍ନି ଧନଂ ବାପି ସୁଖଂରାଜ ସମୋଭବେତ୍
କ୍ରୋଧାର୍ଥେ ଲଭୌ ବନ୍ଧେଚ୍ଛୌ ଦାରିଦ୍ର୍ୟଂରୋଗଏବଚ

ପୂର୍ବଦ୍ୱାର କଲେ ଦୀର୍ଘ ପ୍ରସ୍ତକୁ ମାପି ଆଠଭାଗ କରିବ ପ୍ରଥମ ଭାଗରେ ଦ୍ୱାରକଲେ ଅଗ୍ନିଭୟ ଦ୍ୱିତୀୟ ଭାଗ ଧନଲାଭ ତୃତୀୟ ଭାଗ ସୁଖ ଚତୁର୍ଥ ଭାଗ ବିତ୍ତଲାଭ ପଞ୍ଚମ ଭାଗ କ୍ରୋଧ ଷଷ୍ଠ ଭାଗ ରତ୍ନଲାଭ ସପ୍ତମଭାଗ ଦରିଦ୍ର ଅଷ୍ଟମ ଭାଗରେ ରୋଗ ଜନ୍ମେ ଏପରି ବୁଝି ଦ୍ୱାରବନ୍ଧ କରିବ ।

ସୁତପୀଡ଼ା ଶତ୍ରୁ ବୃଦ୍ଧି ଗୋଧନଂ ବଳ ବର୍ଦ୍ଧନଂ
ସମ୍ପତ୍ତିଶ୍ଚ ନୃପାତ ଭୟଃ ରୋଗୋ ରୁଗ୍‌ଣସ୍ତଥାପରଃ

ପଶ୍ଚିମଦ୍ୱାର ହେଲେ ଦୀର୍ଘ ପ୍ରସ୍ତ ମାପି ପୂର୍ବ ପରି ଆଠଭାଗ କରିବ ପ୍ରଥମଭାଗ ସନ୍ତାନ ପୀଡ଼ା ୨ୟ ଭାଗ ଶତ୍ରୁବୃଦ୍ଧି ୩ୟ ଭାଗ ଗୋଧନ ଲାଭ ୪ର୍ଥ ଭାଗ ବଳବୃଦ୍ଧି ୫ମ ଭାଗ ସମ୍ପାନ ଲାଭ ୬ଷ୍ଠ ଭାଗ ରାଜଭୟ ୭ମ ଭାଗ ରୋଗ ୮ ମରେ ଆକସ୍ମିକ ରୋଗ ହୁଏ । ପଶ୍ଚିମ ଦ୍ୱାରରେ ଏହିପରି ଭାଗ ଦେଖିବ ।

ସ୍ୱଳ୍ପସୂତାଃ ପୀଡକଷ୍ଟ ପରାଭୂତେନ ରୋଗଭାକ୍
ସୁତବୃଦ୍ଧି ପୁତ୍ରନାଶଃ ଧନଂ ରୋଗଃ ପଥ କ୍ରମମ୍ ।

ଦକ୍ଷିଣ ଦ୍ୱାରରେ ପୂର୍ବପରି ଦୀର୍ଘ ପ୍ରସ୍ତ ସମାନ କରି ଚତୁ-ର୍ଦ୍ଦିଗ ମାପି ଆଠଦ୍ୱାର ହରି ଭାଗ ଦେଖିବ । ପ୍ରଥମ ଭାଗରେ ଦ୍ୱାର

କଲେ ଅଳ୍ପ ସନ୍ତାନ ହୁଅନ୍ତି ଦ୍ୱିତୀୟ ଭାଗରେ ପରପୀଡ଼କ ତୃତୀୟ ଭାଗରେ ପରାଭବ ପ୍ରାପ୍ତ ଚତୁର୍ଥ ଭାଗରେ ସୁଖଲାଭ ପଞ୍ଚମ ଭାଗରେ ସନ୍ତାନ ବୃଦ୍ଧି ଷଷ୍ଠ ଭାଗରେ ପୁତ୍ରନାଶ ସପ୍ତମ ଭାଗରେ ଧନ ଲାଭ ଅଷ୍ଟମ ଭାଗରେ ଦ୍ୱାର ବନ୍ଧ କଲେ ରୋଗ ଜାତ ହୁଏ ।

ମରଣଂ ଶତ୍ରୁ ପୀଡ଼ାଂଚ ଧନ ଦାରା ସୁଖଂଚୈବେ
ଧନନାଶଃ ଶତ୍ରୁ ଖାତଃ ପତ୍ନୀ ନାଶଃ ସୁତସ୍ତଥା

ଉତ୍ତରକୁ ଦ୍ୱାର କଲେ ପୂର୍ବ ପ୍ରକାର ଚତୁର୍ଦ୍ଦିଗ ଦୈର୍ଘ୍ୟ ପ୍ରସ୍ଥ ମାପ କରି ଆଠଦାରା ଭାଗଦେଇ ଭାଗ ଘେନିବ । ୧ମ ଭାଗରେ ଦ୍ୱାର କଲେ ମରଣ ୨ୟରେ ଶତ୍ରୁଭୟ ୩ୟ ଧନ ସୁତ ଓ ସ୍ତ୍ରୀ ବୃଦ୍ଧି ୪ର୍ଥରେ ସୁଖ ୫ମରେ ଧନ ୬ଷ୍ଠରେ ଶତ୍ରୁ ଭୟ ୭ମରେ ପତ୍ନୀନାଶ ଓ ଅଷ୍ଟମରେ ପୁତ୍ରନାଶ ହୁଏ ।

ଦ୍ୱାରସ୍ୟୋର୍ଦ୍ଧ୍ୱଂ ବିଶାଲଂଚେତ୍ ଅଶୁଦ୍ଧଂ ଶକଟଂ ତ୍ୟଜେତ୍ କୁଟୁମ୍ବଂ
କପାଟସ୍ୟୋଦ୍ ଘାଟନେଚ ସ୍ୱାମ୍ୟୁନ୍ମାଦଚ ନଷ୍ଟୟୁଂ

ଯେଉଁ ଦିଗରେ ଦ୍ୱାର ହେଉ ଯଦିଚ ଊର୍ଦ୍ଧ୍ୱଭାଗ ବିଶାଳ ହୁଏ ତେବେ ଅଶୁଦ୍ଧ ଫଳ ଘଟେ କୁଟୁମ୍ବ ହାନି କରାଏ । କବାଟ ସ୍ୱଇଚ୍ଛାରେ ଖୋଲିଲେ ସ୍ୱାମୀ ଉନ୍ମାଦ ଯୁକ୍ତ ହୁଅନ୍ତି ଏବଂ ସ୍ୱଇଚ୍ଛାରେ ବନ୍ଦ ହୋଇଗଲେ କୁଳକ୍ଷୟ କରାଏ ।

ବାମବକ୍ରେ ସ୍ତ୍ରୀୟୋ ମୃତ୍ୟୁ ଦକ୍ଷିଣେ ସ୍ୱାମୀନାଶନଂ
ବିଶ୍ରାମେ ବନ୍ଧନାଶଃସ୍ୟାନ୍ତ୍ର ଊର୍ଦ୍ଧ୍ୱବକ୍ରେ ଧନକ୍ଷୟଃ
ଦ୍ୱାରେ ତୁ ମର୍ଦ୍ଦଳାକାରେ କୁଳନାଶେ ଭବେଧ୍ରୁବଂ

ଦ୍ୱାରର ବାମପାର୍ଶ୍ୱ ବକ୍ରହେଲେ ସ୍ତ୍ରୀର ମୃତ୍ୟୁ କରାଏ ଦକ୍ଷିଣ ବକ୍ରହେଲେ ସ୍ୱାମୀ ନାଶଯାଏ । ଦ୍ୱାର ଅଉଜ ରହିଲେ ବନ୍ଧୁ ନାଶ କରାଏ ଊର୍ଦ୍ଧ୍ୱ ବକ୍ର ହେଲେ ଧନ ନାଶ କରାଏ ଦ୍ୱାର ମର୍ଦ୍ଦଳା-କାର ହେଲେ କୁଳନାଶ ଘଟେ । ଦ୍ୱାର ସଳଖ ଓ ସୌନ୍ଦର୍ଯ୍ୟ ଯୁକ୍ତ ହେଲେ ଶୁଭଫଳ ଦିଏ ।

* ଗୃହର ଭାଗ ନିୟମ *

ବିତ୍ତଭାଗୈ ର୍ଗେହଗର୍ଭଂ କୃତ୍ୱା ଭାଗ ଦ୍ୱୟଂ ତତଃ
ଶେଷସ୍ତମ୍ଭେନ ସହିତଂ ବହଦାରୁ ପରସମଂ
ଆଳନ୍ଦ ପରିମାଣଂ ତୁ ଯାବଇବୈଶେଷ ମଧ୍ୟକଂ
ତସ୍ୟସ୍ତମ୍ଭେନ ସହିତଂ ଦ୍ୱୟୋର୍ଭାଗେନ୍ କରିଷ୍ୟଥ
ଭାଗଦ୍ୱୟଂ ବହଦାବେରଂଶାତ ତ୍ୟକ୍ତ- । ତ୍ରୟନ୍ନତଃ
ଅଳନ୍ଦଶ୍ରେଣୀ ନିଷ୍କାସନ୍ଦ କ୍ୟକ୍ତ୍ୱା ବୈଗୃହ ମାରଭେତ୍
ତସ୍ୟାଧଃ ଭରତ୍ତିତସ୍ତେତ୍ ଭରତ୍ତ୍ୟୋର୍ଦ୍ଧାଂଶତଃପରଂ
ସ୍ତମ୍ଭଂତୁ ଭୂମି ପର୍ଯ୍ୟନ୍ତ ମଳନ୍ଦ ଶ୍ରେଣୀମାତ୍ରୁସତ୍
ଭାଗଦ୍ୱୟେ ଭାଗମେକଂ ସ୍ଥାପୟିତ୍ୱା ପ୍ରଯତ୍ନତଃ
ଗୃହଂ କୁର୍ଯ୍ୟାତ୍ ଶିଳ୍ପିକରୈନକୁର୍ଯ୍ୟାତ୍ ତଦଂଶୟୋଃ

ଘରର ଗର୍ଭକୁ ତିନିଭାଗ କରିବ । ଦୁଇଭାଗ ପାଢ଼ୁଆ ଖମ୍ବ କରି ତା ସହିତ ଦୁଲର ଉପର ଅଂଶ ସମାନ କରିବ । ପାଆଭାଗ ଯେତେହେବ ପାଢ଼ୁଆ ଖମ୍ବ ମଧ୍ୟଠାରୁ ପାଆଖମ୍ବ ମଧ୍ୟ ପର୍ଯ୍ୟନ୍ତ ତିନି ଭାଗ କରିବ । ଦୁଇଭାଗ ଶ୍ରେଣୀ ଉପରେ ଅଂଶଠାରୁ ଗୁଡ଼ିବ । ପାଆଭାଗ ଶ୍ରେଣୀ ଠେକ ଯାହାଥିବ ତାହା ମଧ୍ୟ ଗୁଡ଼ିବ । ତାହାର ତଳକୁ ଭରତିଆ ରହିବ । ଭରତିଆର ଉପରେ ଅଂଶଠାରୁ ତଳକୁ ଭୂମିସ୍ଥାନ ପର୍ଯ୍ୟନ୍ତ ଖମ୍ବ କରିବ । ପାଆଭାଗ ଶ୍ରେଣୀର ଠେକ ଯେତେଥିବ ତାକୁ ଦୁଇଭାଗ କରିବ । ଭାଗକୁ ଯେତେହେବ ତାହା ସହିତ ପୂର୍ବ ଦୁଇଭାଗ ମିଶାଇବ ସେତିକ ମାପଶ୍ରେଣୀ ବାହାର ଅଂଶଠାରୁ ତୁଣ୍ଡି ଆର ଭିତରଅଂଶ ପର୍ଯ୍ୟନ୍ତ ରଖିବ । ଭରତିଆକୁ ପାଢ଼ୁଆ ଖମ୍ବ ମଧ୍ୟଠାରୁ ପାଆଭାଗ ଖମ୍ବ ପର୍ଯ୍ୟନ୍ତ ମାପକରି ଦୁଇ-ଭାଗ କରିବ । ଭାଗ ଗୋଟିକୁ ତିନିଭାଗ କରି ଭାଗେ କାଟି ଦୁଇ-ଭାଗ ଫୁଲ ଗୋଜ କରିବ । ଶ୍ରେଣୀଠେକ ମଧ୍ୟ ମିଶାଇବ । ଏହି କ୍ରମରେ ସମସ୍ତ ଗୃହ ନିର୍ମାଣ କରିବ ।

ପୁରମେକଂଚ ସଦନଂ ପ୍ରାସାଦ ଦ୍ୱୌ ପୁରୌବିଦୁଃ
ତ୍ରିପୁରୈଃ ଚାଳକାଙ୍କ୍ଷେୟ୍ୟାଚ ତସ୍ତ୍ରୋ ଜଗତୀ ତଥା ।

ଘର ଯେବେ ଏକପୁର ହେବ ତେବେ ଦୁଇପୁର ହେଲେ ମେଡ଼ ତିନପୁର ହେଲେ ଅଟ୍ଟାଳିକା ଗୃହପୁର ହେଲେ ଜଗତି ହୁଏ ।

ତ୍ରିଶ୍ରେଣୀ ଦୁଲ୍ଲାଂକୁର୍ଯ୍ୟାତ୍ ଭାଗଦ୍ୱୟଂ ତତଃପରଂ
ପଞ୍ଚଶ୍ରେଣୀ ଚତୁର୍ଭାଗାନ୍ ସପ୍ତଶ୍ରେଣୀ ଦ୍ୱିମିଶ୍ରାତାନ୍
ନବଶ୍ରେଣୀ ମଷ୍ଟଭାଗା ନେବଂ କୁର୍ଯ୍ୟାତ୍ ଯଥାକ୍ରମଂ

ତିନିଶେଣୀଆ ଘରର ଦୁଲ୍ଲା ଦୁଇଭାଗ କରିବ । ପାଞ୍ଚ ଶେଣୀଆ ଘରର ଦୁଲ୍ଲା ଗୃହଭାଗ ସାତ ଶେଣୀଆ ଘର ଛଅଭାଗ ନଅଶେଣୀଆ ଘର ଆଠଭାଗ ଏପରି ଭାଗ ଦିଆଯାଏ ।

ବକ୍ତବାଗ୍ରେମଧ୍ୟ ଦେଶାନ୍ ମଧ୍ୟଦେଶଂ ତତଃପରଂ
ଷଡଭର୍ଗେ ସ୍ତମ୍ଭମାନଂ ଭାଗ ଚତୁଷ୍ଟୟଂତତଃ
ଦୁଲ୍ଲାଂଚ ତତ୍ପର ସାଂଶୁ କୁର୍ଯ୍ୟାଦ୍ୱୟେନାର୍ଦ୍ଧ ଦୁଲ୍ଲାଂ
ଭାଗମେକଂ ତ୍ରିଭର୍ଗେ ବିଭଜ୍ୟାଥ ଦ୍ୱୟଂତ୍ତତଃ
ତସ୍ମିନ୍ନଭବ ଦ୍ୱୟେଷ୍ୱପି ଦୁଲ୍ଲାଂ କୁର୍ଯ୍ୟାଚ ପ୍ରଯୂତ୍ନତଃ

ଦୁଲ୍ଲାର ମଧ୍ୟଠାରୁ ଆର ମଧ୍ୟ ଯେତେହେବ ତାକୁ ଛଅଭାଗ କରିବ । ଗୃହଭାଗ ତଉକ ଦୁଲ୍ଲା କରିବ । ଦୁଇଭାଗ ଡାଳ ଦୁଲ୍ଲା କରିବ । ଭାଗ ଗୋଟିକୁ ତିନଭାଗ କରି ଦୁଇଭାଗ ଗୋଜ କରିବ ସେହି ଦୁଇଭାଗ ଭିତରେ ଡାଳ ଦୁଲ୍ଲା କମ୍ପା ତଉକ ଦୁଲ୍ଲା ରହିବ । ଏହି ପ୍ରକାର ଅନ୍ୟ ସମସ୍ତ ଘର ନିର୍ମାଣ କରିବ ।

ଦେବାଗାରେ ସ୍ୱବଦନ୍ତିଃସ୍ୟାତ୍ ଗାନ୍ଧାରଂ ହସ୍ତୀଶାଳକେ
ସୁରସେନଂ ନୃପାଣାଂଚ ଦ୍ୱିଜାନାଂ ମଗଧା ସ୍ତଥା
ବ୍ରଜତ୍ତଂ ବୈଶ୍ୟଜାଣାନାଂ ଶୂଦ୍ରାଣାଂଚ ବୈଦେହକଂ
ପାଞ୍ଚାଳକଂ ତଥାନ୍ୟେଷାଂ କୌରବଂ ସର୍ବ ଜାତିଷୁ

ଦେବତା ଗୃହର ନାମ ଅବନ୍ତୀ, ହସ୍ତୀ ଘରର ନାମ ଗାନ୍ଧାର ରାଜ ଘରର ନାମ ସୁରସେନ, ବ୍ରାହ୍ମଣ ନାମ ମଗଧ, ବୈଶ୍ୟ ଘରର ନାମ ବ୍ରଜନ୍ତ, ଶୂଦ୍ର ଘରର ନାମ ବୈଦେହକ ଅନ୍ୟ ଅନ୍ୟ ଜାତି ଘରର ନାମ ପାଞ୍ଚାଳ ଏବଂ ସମସ୍ତ ଘରର ନାମ କୌରବ ଅଟେ ।

## ଘରର ଗର୍ଭ ଭେଦ

ଗର୍ଭ ଭେଦଂ ଚ ସଦନଂ କୁର୍ଯ୍ୟାତଃ ଶିଳ୍ପି କାରକଃ
ଧନନୋ ନଧନ୍ୟଯାନ୍ତି କୃଷିକର୍ମ ବିବର୍ଜୟେତ୍

ଗର୍ଭଭେଦ ଘରରେ ବାସ କରିବା ନିଷେଧ ଅଟେ । କଲେ ଘର କର୍ତ୍ତାର ଅପମୃତ୍ୟୁ ହୁଏ ।

## ଦୀର୍ଘ ଶୂଳ

ଉଲ୍ଲଙ୍ଘିତଂ ନକର୍ତ୍ତବ୍ୟଂ କର୍ତ୍ତବ୍ୟଂ ପରିମାଣକଂ
ଯେନଭାଗେନ କୁର୍ଯ୍ୟାର୍ତ୍ତୁ ତନ୍ମସ୍ତକ ବିଗୃହୟେତ୍

ଘର ଭାଗ ଯେଉଁ ନିୟମରେ ଯେଉଁ ପରିମାଣରେ ଦିଆଯାଇ ଥିବ ସେହି ନିୟମରେ ଉଲ୍ଲଙ୍ଘିତ ନ କରି ଘର ନିର୍ମାଣ କରିବ ।

ଖିଷ୍ଣ ନ୍ୟନେଦୀର୍ଘ ଶୂଳଂ ବତ୍ ତତ୍ କର୍ତ୍ତୁ ଶିଳ୍ପକାରୟେଃ
ଧନପୁତ୍ରୌ କ୍ଷୟଂ ଯାତଃ ସ୍ୱ-ଗୃହେ ପ୍ରାଣ ନାଶନଂ

ଗୋଳ ଭାଗରୁ ଯେବେ ଘରର ଆୟତନ ଉଣା ହୁଏ ତେବେ ସେହି ଘର ଦୀର୍ଘ ଶୂଳ ହୁଅଇ ସେହି ଘରରେ ବାସ କରିଲେ ଘର କର୍ତ୍ତାର ଧନ ପୁତ୍ର ବିନାଶ ହୁଅନ୍ତି । ପ୍ରାଣ କଷ୍ଟ ମଧ୍ୟ ହୁଏ । ଏତଦ୍ ବ୍ୟତୀତ ଶିଳ୍ପକାରର ମଧ୍ୟ ଅନିଷ୍ଟ ହୋଇପାରେ ।

## ରୁକ ଭେଦ ଓ ଗଣ୍ଠି ଭେଦ ବିଗ୍ରହ

ରୁକ୍ ଭେଦେଚ ଗୃହେ ବାସଃ କର୍ତ୍ତୁ ଶ୍ଚ ପ୍ରାଣନାଶନଂ
ଗ୍ରନ୍ଥି ଭେଦେ ଗୃହେ ବାସଃ ସ୍ୱ-ଗୃହେ ଶିରଚ୍ଛେଦନଂ

ରୁକ୍ ଭେଦ ଘରେ ବାସ କଲେ ଘରେଇର ପ୍ରାଣନାଶ ହୁଏ । ଗଣ୍ଠି ଭେଦ ଘରରେବାସକଲେସ୍ୱଘରଲୋକଘରୋଇରଶିରଚ୍ଛେଦନହୁଏ

## ପାତାଳପୃଷ୍ଠ ଘର

ପାତାଳ ପୃଷ୍ଠଂ ଚର୍ତ୍ତୁର୍ବୋଧଂ ଚୈବଂସଦ୍ମଂଖିଷ୍ଣାଧିକେସତଃ
ବନ୍ଧୁପୁତ୍ର କଳତ୍ରାଣାନିଧନଂଚ ଭବେତ୍ ଧ୍ରୁବଂ

ଘରଟି ଯେବେ ଗୋଳ ଭାଗଠାରୁ ଅଧିକ ହୁଏ ସେ ଘରକୁ ପାତାଳ ପୃଷ୍ଠ କହନ୍ତି । ପାତାଳ ପୃଷ୍ଠ ଘର ହେଲେ ପୁତ୍ର କଳତ୍ର ବନ୍ଧୁ ଆଦି ନାଶ ହୁଅନ୍ତି ।

## ନନ୍ଦା ବର୍ତ୍ତିକ ଘର

ନନ୍ଦାଂ ବା ନବରଙ୍ଗ ଚ କୁର୍ବନ୍ତି ଶିଳ୍ପ କାରକାଃ
ଘାର୍ଘ ପ୍ରନ୍ତ ସମେକୃତ୍ୱା ନାସ୍ତ୍ରେୟ ବମଧିକାଂ ଭବେତ୍

ଘାର୍ଘ ପ୍ରନ୍ତ ସମାନ ଥିବା ଘରକୁ ନବରଙ୍ଗ ବା ନନ୍ଦା ବର୍ତ୍ତିକ ଘର କହନ୍ତି ।

ମଧ୍ୟେ ଚତୁର୍ଦ୍ଦଶଂ ପାଦ୍ୟଂ ସ୍ଥାପୟେତ୍ ପୁଞ୍ଜ ସଜ୍ଞକାଂ
କୁର୍ଯ୍ୟାତ୍ ଚତୁରସ୍ରଂତୁ ଚତୁର୍ଦିକ୍ଷେୟବସଂସ୍ଥିତଂ

ନବରଙ୍ଗ ଘରରେ ଚଉପାଦ ଅର୍ଥାତ୍ ତିନହାତ ଅଧେ ମଝ ରଖି ପୁଞ୍ଜ ପକାଇବ । ଏହାପରି ମଧରେ ଚତୁରସ୍ର କରି ଗୃହ ପାଖରେ ଦେବ ।

ଚତୁର୍ଭାଗେନ କାଷ୍ଠେନ ଚୌକେନ କୋଷ୍ଠିକାଂ ଭବେତ୍
ତସ୍ମୈରେଚ ଭବେତ୍ ପଞ୍ଚା ବଚାନଂ ପରିସଂସ୍ଥିତଂ

ଚଉପାର୍ଶ୍ୱ ପୂର୍ବୋକ୍ତ ନିୟମରେ କରି ସାରିବା ପରେ ଗୋଟାଏ ପାଖରେ ଗୃହ କୋଣକୁ ଦେଖି କୋଠି କରିବ ପ୍ରତ୍ୟେକ କୋଠିରେ ଗୃହଖଣ୍ଡ ଲେଖାରେ ମାଳବା ବସାଇବ । ତାହା ଉପରେ ପଞ୍ଚା ଗୃନ୍ଦୁଆ ଦେବ ।

ଚତୁର୍ଦିକ୍ଷୁ ଭବେତ୍ ଏବଂ ତନ୍ମଧ୍ୟେ ନନ୍ଦକଂ ଭବେତ୍
ପୁଞ୍ଜ ମାଲବ ମେକଂ ଚ ତସ୍ୟୋପରି ନନ୍ଦପଞ୍ଚାପୁଃ

ଗୃହଭାଗ ସାମନ ହେଲେ ପରେ ମଝିରେ ଯାହା ରହିବ ତାକୁ ନନ୍ଦା ବର୍ତ୍ତିକ ଅର୍ଥାତ୍ ସମାନ କରିବ ପୁଞ୍ଜ ଉପରେ ପାନ୍ଥୁ ମାଲବ ଦେବ । ତାହାର ଉପରି ଭାଗରେ ନନ୍ଦ ଦେବ ।

ତମଶିରଂସି ଚ କୋଣେ ପ୍ରଥମେ ପଞ୍ଚ ଭାଗକେ
ଭାଗ ମେକଂ ପରିତ୍ୟକ୍ତ୍ୱା ଦ୍ୱିତୀୟୋପୃଷ୍ଠତ୍ରୁଭାଗକାଃ

ଗୃହ କୋଣରେ ଗୃହଗୋଟି ଗାନ୍ଥୁ ମୁଣ୍ଡ ଗଢ଼ିବ ପ୍ରଥମରେ ପଞ୍ଚା ଯେତେହେବ ତାକୁ ପାଞ୍ଚ ଭାଗ କରିବ ଏଗକାଠି ଗୃହଭାଗ ଦ୍ୱିତୀୟ ପଠ କରିବ ।

ତତୈବପଞ୍ଚ ଭାଗେନ ତଥା ତ୍ୟକ୍ତ୍ୱୈକ ଭାଗକଂ
ତୃତୀୟସ୍ଥ ଭାଗ ମାଦାୟ ଚତୁର୍ଭାଗେନ୍ କରିଷ୍ୟଥ

ଦ୍ୱିତୀୟ ପଟକୁ ପାଞ୍ଚଭାଗ କରି ପରେ ଭାଗେ କାଟି ତୃତୀୟପଟ
ଚାରିଭାଗ କରିବ ।

ପଞ୍ଚ ଭାଗନ୍ ପୁନଃ କୃତ୍ୱା କ୍ରମେଣ ତ୍ୟକ୍ତ ଭାଗକାନ୍
ଚତୁର୍ଥଂ ଚତୁର୍ଭାଗଂ ଚ ତନ୍ମଧ୍ୟେ ଦଣ୍ଡକଂ ଭବେତ୍

ପୁନଶ୍ଚ ତୃତୀୟ ପଟକୁ ପାଞ୍ଚ ଭାଗ କରିପରେ ଭାଗେ କାଟି
ଚତୁର୍ଥପଟ ଚାରିଭାଗକର ମଧ୍ୟରେ ଦଣ୍ଡ ଦେବ ଏହି କ୍ରମରେ କରିବ ।

ଅଷ୍ଟବିଂଶ ଭବେଦାଦ୍ୟ ମୁଣ୍ଡେଷ୍ୱେଚ ଚତୁଷ୍ଟୟଂ
ଦ୍ୱାତ୍ରିଂଶନ୍ତୁ ଭବନ୍ତି ପତ୍ର କ୍ରମେଣୈବନ୍ତି ସମ୍ଭବେ

ପ୍ରଥମପଟ ଅଠେଇଶଟି ଠେକା କରିପରେ ଚାରି ଗୋଟି କଣ
ସିଂହ କରିବ । ଏହିରୂପେ ବତିଶ ଗୋଟି କରିବ ।

ଠେକେନ ଭବନ୍ତି ଚୈବ ବକୁଳଂଚ ଦ୍ୱୟଂ ଦ୍ୱୟଂ
ନିପୁରଂ ଚୈବ କୃତେଷ୍ୱଂ ଘୋରେଣ ବାହ୍ୟମେବ ଚ

ଠେକା ଗୋଟିକରେ ବଉଳା ଦୁଇ ଗୋଟି କରିବା ପରେ
ନିପୁର ଯାକେ ଏହିରୂପେ ଖଞ୍ଜିବ ବାହାର ପାଖରେ ଘେର ମାରିବ

ବକୁଳ ନନ୍ଦକଂ ଚୈବ ନନ୍ଦ ପାର୍ଶ୍ୱେ ଚତୁଷ୍ଟୟେ
ଝରଂ କୃତ୍ୱା ଘରଭାଗଂ କ୍ଷିତ୍ୱା ଠେକେନ ଯୋଜୟେତ୍

ଚାରିଗୋଟି ବଉଳା ନନ୍ଦା ପଟରେ ମରାହେବାପରେ ନନ୍ଦର ଚାରି
ପାଖରେ ଭେଜଆ ଝର ଖଞ୍ଜିବ । ଘରର ମାପ ଆଣି ଠେକା କରିବ

## ନବରଙ୍ଗ ଗୃହ

ନବ କୋଷ୍ଠିଚ କୃତ୍ୱାବୈ ମଧ୍ୟେଚ ବକୁଳଂ ଭବେତ୍
ଠେକେନ ପୂରକୋ ଯନ୍ତ ଗୃଷ୍ଟ କୋଷ୍ଠୀ ଯଥା କ୍ରମମ୍ ।

ନବରଙ୍ଗ ଘରରେ ନଅଗୋଟି କୋଠରୀ କରିବା ପରେ
ମଧ୍ୟମ କୋଠରୀରେ ବଉଳ କରି ଭେଳାଦେବ । ଆଠ ଗୋଟି
କୋଠରୀରେ ପୂରେର କ୍ରମଶ ଦେବ । ଏକ ସଦେମଂ ମୃତ୍ୟୁପଞ୍ଚକମ୍ ॥

ତସ୍ମିଃପୁରେ ଭବେନ୍ମଧ ଗେହମାନଂ ପ୍ରବକ୍ଷ୍ୟସୁ
କୁର୍ବିତ ଗମେ ତନୈବ ବଶୁଦ୍ଧିଃ ପରିକାର୍ତ୍ତିତ ।

ଶିଳ୍ପିକାର ମଧ୍ୟମ କୋଠରୀରେ ତିନପୁର ଠେକରୀ ଦେବ ଘରମାପ ବୁଝି ଠେକରୀ କାଟିବ ।

ଗୋଲେଖଂ ତସ କୃତ୍ୱା ବୈ ତତନଂ ଚତୁରସ୍ରକେ
ମଧ୍ୟେ ଦଣ୍ଡଂ ପ୍ରକୁର୍ବିତଂ ନବରଙ୍ଗ ଗେହଂ ଭବେତ୍ ।

ତାପରେ ପୁଞ୍ଜି ଗୋଲେଖ ବସାଇବ, ପୁଞ୍ଜା ଗୋଲେଖ ଗୃହ ପାଖରେ ପଠା ଗୃନ୍ଦୁଆ ମାରିବ ଏବଂ ତାହା ମଧ୍ୟରେ ଦଣ୍ଡ ବସାଇବ

—※—

## ସପ୍ତମ ପରିଚ୍ଛେଦ

### ଶୁଭାଶୁଭ ଜ୍ଞାନ

—ଶରଣ ପଞ୍ଚକ—

ଧନୁ ମୀନ ଦ୍ୱୟୋର୍ମଧ୍ୟେ ଯାବତ୍ତିଷ୍ଠତି ଚନ୍ଦ୍ରମାଃ
ନଚ୍ଛିନ୍ଦ୍ୟାମି ତୃଣ କାଷ୍ଠାନି ନଗଚ୍ଛେତ୍ ଦକ୍ଷିଣାଂ ଦିଶଂ

ଚନ୍ଦ୍ର ଧନୁରାଶି ଅତିକ୍ରମ କରି ମକର କୁମ୍ଭ ରାଶି ଶେଷ କରିବା ଅର୍ଥାତ୍ ମୀନ ଚନ୍ଦ୍ର ହେବା ପର୍ଯ୍ୟନ୍ତ ଦିବସ ଓ ସମୟ ମାନଙ୍କରେ ଶରଣ ପଞ୍ଚକ ଦୋଷ ପ୍ରବର୍ତ୍ତେ । ଏଥିରେ ତୃଣ କାଷ୍ଠ ଛେଦନ କରିବା ନିଷେଧ ଏବଂ ଦକ୍ଷିଣଦିଗକୁ ଯାତ୍ରା କରିବା ନିଷେଧ ।

ବିଶ୍ୱଦେବେ ଅଗ୍ନି ଭୟଂ ଶ୍ରବଣାଯୁଂ ଭୟଂ ଭବେତ୍
ଧନିଷ୍ଠାୟାଂ ଭବେଦ୍ରୋଗୋ ବରୁଣେ ମରଣଂ ଧ୍ରୁବମ୍
ଆଜପାଦେ ନୃପାତ୍ ଖ୍ୟାତି ଭବେତ୍ ଶରଣ ପଞ୍ଚକେ

ଉତ୍ତରାଷାଢ଼ା ନକ୍ଷତ୍ର ମକର ଚନ୍ଦ୍ରରେ ଗୃହାରମ୍ଭ କଲେ ଅଗ୍ନି ଭୟ ଶ୍ରବଣା ମକରରେ ନାନା ପ୍ରକାର ଭୟ ଧନିଷ୍ଠା ମକର ଓ କୁମ୍ଭରେ ରୋଗ ଜାତ ହୁଏ । ଶତଭିଷା କୁମ୍ଭ ଚନ୍ଦ୍ରରେ ମୃତ୍ୟୁବତ୍ ପୀଡ଼ା ଦିଏ ପୂର୍ବଭାଦ୍ରପଦ କୁମ୍ଭ ଚନ୍ଦ୍ରରେ ରାଜଭୟାଦି ବହୁବିଧ ଭୟ ଜାତ କରାଏ, ଏଣୁ ଶ୍ରବଣ ପଞ୍ଚକରେ ତୃଣ କାଷ୍ଠ ଛେଦନ

ଏକ ଦଣ୍ଡ ଶ୍ରୋତ୍ତରାନ୍ତ୍ୟ ଶ୍ରବଣାଦ୍ୟେ ତଥୈବଚ
ମଧ୍ୟ ଦଣ୍ଡୌ ଧନିଷ୍ଠାୟାଂ ମଧ୍ୟେ ଶତଭିଷାଦ୍ୱୟଂ
ଗୃହେଦ୍ୟ ତଥୈବ ପୂର୍ବାୟୁଂ ଶରଣ ପଞ୍ଚକଂ ମତଂ

ଉତ୍ତରାଷାଢ଼ା ନକ୍ଷତ୍ରର ଶେଷ ଏକ ଦଣ୍ଡ ଶ୍ରବଣାର ଆଦ୍ୟ ଏକ ଦଣ୍ଡ ଧନିଷ୍ଠା ନକ୍ଷତ୍ରର ମଧ୍ୟରୁ ଦୁଇ ଦଣ୍ଡ ଏହି ସମୟମାନଙ୍କରେ ଶରଣ ପଞ୍ଚକ ଦୋଷମାନ ଅତ୍ୟନ୍ତ ଭୟାବହ । ଏ ସମୟରେ ଗୃହାରମ୍ଭ କମ୍ବା ତୃଣକାଷ୍ଠ ଛେଦନ କଲେ ନିଶ୍ଚୟ ବିପଦ ଘଟେ ।

## ପଞ୍ଚ ପଞ୍ଚକ

ଧୃତ୍ୱା ସଦାଚ ତିଥି ସୂର୍ଯ୍ୟ ଦଶାଷ୍ଟ ବେଦାନ୍
ସଂଯାନ୍ତ ଯାତେ ଦିବସଂ ନୟୁଯାତ୍
ହୃତ୍ୱାନବେ ନୈବତ ଭାଗ ଶେଷଂ
ରୋଗଂଚ ବହ୍ନିଂ ନୃପ ଚୌର୍ଯ୍ୟ ମୃତ୍ୟୁନ୍ ।

ତିଥି ୧୫, ସୂର୍ଯ୍ୟ ୧୨, ୧୦, ୮; ବେଦ ୪ ଏମାନଙ୍କୁ ମାସର ଯେତେଦିନ ହୋଇଥିବ, ସେହି ଦିନକୁ ପୂର୍ବ କଥିତ ଏ ପାଞ୍ଚଟି ଅଙ୍କ ସହିତ ସେହି ମିଶାଇ ସମସ୍ତ ଅଙ୍କକୁ ନଅ ଦ୍ୱାରା ହରିଲେ ଶେଷାଙ୍କ ଯାହା ରହିବ ତାହାଦ୍ୱାରା ପଞ୍ଚକ ଜାଣିବ ।

ଏକେ ମୃତ୍ୟୁର୍ଦ୍ୱୟଂ ବହ୍ନି ଶ୍ଚତ୍ୱାରେ ନୃପତିସ୍ତଥା
ଷଷ୍ଠ ଗୃହେ ବସୁରୋଗଶ୍ଚ ଶେଷସ୍ତୁ ନାସ୍ତି ପଞ୍ଚକଃ

୧ ରହିଲେ ମୃତ୍ୟୁ ପଞ୍ଚକ, ୨ ରହିଲେ ଅଗ୍ନି ପଞ୍ଚକ, ୪ ରହିଲେ ରାଜ ପଞ୍ଚକ, ୬ ରହିଲେ ଚୌର ପଞ୍ଚକ ଓ ୮ ରହିଲେ ରୋଗ ପଞ୍ଚକ ହୁଏ । ଏ ସମସ୍ତ ଦିନ ଗୃହାରମ୍ଭ ପକ୍ଷେ ବର୍ଜ୍ଜନ କରିବ । ଅନ୍ୟମାନେ ଶୁଭପ୍ରଦ ।

ନଶିରୋଗଚୌରବର୍ଜ୍ଜ୍ୟଂ ଦିବାରାଜାଗ୍ନି ରେବଚ
ବର୍ଜ୍ଜ୍ୟେତ୍ ପଞ୍ଚତୋଯଜ ସର୍ବୈମଂ ମୃତ୍ୟୁପଞ୍ଚକମ୍ ॥

ବୁଧରେ ଶୁଭଦେଲେ ଚୌର ପଞ୍ଚକ ରୋଗ ପଞ୍ଚକ ଏ ଦୁଇ ପଞ୍ଚକ ତ୍ୟାଗ କରିବ । ଦିବସ ଶୁଭରେ ରୋଗ ପଞ୍ଚକ ଅଗ୍ନି ପଞ୍ଚକ ତ୍ୟାଗ କରିବ । ମୃତ୍ୟୁ ପଞ୍ଚକକୁ ସର୍ବଦା ତ୍ୟାଗ କରିବ ।

ଶର ୫ ଗ୍ରମେଷୁ ୩ ସପ୍ତେଷୁ ୭ ଦ୍ୱାଦଶେଷୁ ୧୨ ଦିନେଷୁଚ ଷୋଡଶେ ୧୬ ଗୃଷ୍ଟମେ ୮ ତୈବ ବିଂଶୋତ୍ତର ୨୧ ସପ୍ତେବଚ୍ଚ ୨୩ ଚତୁର୍ଦ୍ଦଶେ ୧୪ ମଞ୍ଚକଂତ ନାସ୍ତିରେବ ବଦନ୍ତ୍ୟହ୍ନ ।

ଶର ୫, ଗ୍ରାମ ୩, ସପ୍ତ ୭, ନବ ୯, ଦ୍ୱାଦଶ ୧୨, ଷୋଡଶ ୧୬, ଅଷ୍ଟ ୮ ବିଂଶୋତ୍ତର ୨୧ ସପ୍ତେବଚ୍ଚ ୨୩ ଏ ଦିନମାନଙ୍କରେ ପଞ୍ଚକ ଦୋଷ ନାହିଁ ।

## ଲଗ୍ନ ପଞ୍ଚକ

ବାର ତିଥ୍ୟଂଚ ନକ୍ଷତ୍ରଂ ଧ୍ରୁବତଲଗ୍ନ ମିଶ୍ରିତଂ
ନବେର୍ଣ୍ଣୈବଚ ହୃତ୍ୟର୍ଥେ ଶେଷସ୍ତୁ ଲଗ୍ନପଞ୍ଚକଃ ।

ବାର ତିଥି ନକ୍ଷତ୍ରକୁ ରଖିବ, ତାହାପରେ ଯେଉଁ ଲଗ୍ନ କରିବ ସେ ଲଗ୍ନର ଧ୍ରୁବାଙ୍କ ମିଶାଇବ । ତାକୁ ୯ ଦ୍ୱାରା ହରଣ କଲେ ଶେଷରେ ଯାହା ରହିବ ତାହା ଲଗ୍ନପଞ୍ଚକ ଅଟେ । ଉକ୍ତ ପଞ୍ଚକ ପୂର୍ବ କଥିତ ମତେ ବିଗ୍ରହ କରିବ ।

## ଲଗ୍ନଧ୍ରୁବାଙ୍କ

ଖୂଣ୍ଡ ୨ ବାଣ ୫ ଋତୁ ୬ ପଞ୍ଚ ୫ ବେଦା ୪ ତ୍ରିଣୀ ୩ ଦ୍ୱି ୨ ଚନ୍ଦ୍ରମା ୧ ଆକାଶେନ୍ଦ୍ର ୧ ଦ୍ୱୟଂ ୨ ବହ୍ନି ୩ ମେଷାଦ୍ୟ ଧ୍ରୁବ ବର୍ଣ୍ଣିତଂ । ମେଷ ଲଗ୍ନ ଧ୍ରୁବାଙ୍କ ୨ ବୃଷର ୫ ମିଥୁନର ୬ କର୍କଟର ୫ ସିଂହର ୪ କନ୍ୟାର ୩ ତୁଳାର ୨ ବିଛାର ୧ ଧନୁର ୦ ମକର ୧ କୁମ୍ଭର ୨ ଏବଂ ମୀନ ଲଗ୍ନର ଧ୍ରୁବାଙ୍କ ୩ ଅଟେ । ଲଗ୍ନାନୁସାରେ ଧ୍ରୁବାଙ୍କ ମିଶାଇ ପଞ୍ଚକ ଆଣିବ ।

## ସମସ୍ତ ଅନୟନ

ବଗ୍ଲପ୍ତାମେର ଦଣ୍ଡତୋ ଦିନଘଟିଘ୍ନାନା ଭବେନ୍ନାଧିପା
ନ୍ନାଧୋନାଙ୍ଗ ଯୁତାକଦାର ଚରଣୈଃ କାଲଘ୍ନଘସ୍ରାର୍ଦ୍ଧକମ୍

ପିଣ୍ଡଂ ତତ୍ଵବଭଜେତ୍ ଘଟିକା ପ୍ରାକ୍‌ପଶ୍ଚିମଷ୍ଟେରବେ
ତସ୍ପିଣ୍ଡଂ ଘଟିଭକ୍ତ ମଙ୍ଗ ବିଯୁତଂ ମଧ୍ୟସ୍ୱାମିଷ୍ଟଦ୍ଧ୍ରୁସ୍ଥଃ ।

ପରମ ଦିବସବେଳ ଦ୬୩।୧୦ ଲିତାରୁ ସେହି ଦିନର ଦିନାର୍ଦ୍ଧ ଯେତେ ତାକୁ ଦୁଇଗୁଣ କରି ଫେଡ଼ିଲେ ଅବଶିଷ୍ଟାଂଶ ମଧ୍ୟପାଦ ହେବ । ପୁଷ୍ପା ପାଦ ଯେତେହେବ ସେହି ପାଦକୁ ଦଣ୍ଡ ଓ ଆଙ୍ଗୁଳକୁ ଲିତାଜ୍ଞାନ କରି ମଧ୍ୟପାଦରୁ ଫେଡ଼ଦେବ । ବାକି ଯାହା ରହିବ ସେଥିରେ ଛଅ ମିଶାଇବ । ଏହି ଛଅ ଅଙ୍କ ଦଣ୍ଡ ଓ ଲିତା ଉଭୟରେ ମିଶାଇବ । ଯେତେ ଦଣ୍ଡ ଓ ଯେତେ ଲିତା ହେଲ ସେହି ସମସ୍ତକୁ ଲିତା କରିବ । ଏହାଦ୍ୱାରା ସେହି ଦିନାର୍ଦ୍ଧକୁ ୬ଦ୍ୱାର ଗୁଣନ କଲେ ଯାହାହେବ ତାକୁ ହରଣ କରିବ । ଯାହା ଲବ୍‌ଧ ଆସିବ ସେ ଦଣ୍ଡହେବ । ଅଂଶକୁ ଯାହା ରହିବ ତାକୁ ୬୦ରେ ଗୁଣି ପୁନଶ୍ଚ ହରଣ କଲେ ଲିତା ଇତ୍ୟାଦି ଆସିବ ।

## ତାରାଶୁଦ୍ଧି

ଜନ୍ମତାରେ ଭବେତ୍ କ୍ଲେଶଂ ସମ୍ପଦୋ ସୁଖ ସମ୍ପଦଂ
ବିପତ୍ତୋ କାର୍ଯ୍ୟନାଶଃସ୍ୟାତ୍ କ୍ଷେମେଚ କ୍ଷମଲଭକଃ ।
ପ୍ରତ୍ୟରୋପରମୋରୋଗଃ ସାଧକୋ ସର୍ବସାଧକଃ
ନୈଧନେ ଧନହାନିଶ୍ଚ ମୈତ୍ରେ ପରମ ମଙ୍ଗଳମ୍ ।

ଜନ୍ମତାର କ୍ଲେଶ ଦାୟକ ସମ୍ପଦରେ ସୁଖଲାଭ ବିପତ୍ତିରେ କାର୍ଯ୍ୟନଷ୍ଟ, କ୍ଷେମରେ ମଙ୍ଗଳ ଲାଭ ପ୍ରତ୍ୟରେ ରୋଗଯୁକ୍ତ ସାଧକରେ ସର୍ବ କାର୍ଯ୍ୟସିଦ୍ଧି ନୈଧନରେ ଧନ ହାନି ମୈତ୍ର ଓ ପରମ ମୈତ୍ରରେ ସୁମଙ୍ଗଳ ଫଳ ମିଳେ ।

## ଚନ୍ଦ୍ରଶୁଦ୍ଧି

ସପ୍ତାଦ୍ୟ ଚନ୍ଦ୍ରେ ଧ୍ରୁବ ମର୍ଥ ଲାଭ
ଷଷ୍ଟେ ତୃତୀୟେ ଧନଭୋଗ ମପ୍ନାଃ
ସର୍ବାର୍ଥ ସିଦ୍ଧି ଦଶମେ ବଦନ୍ତି
ଏକାଦଶେ ସର୍ବ ସୁଖାନଚୈବ ।

ଜନ୍ମ ଚନ୍ଦ୍ର ଓ ସପ୍ତମ ଚନ୍ଦ୍ରରେ ଅର୍ଥ ଲାଭ ହୁଏ । ତୃତୀୟ ଓ ଷଷ୍ଠରେ ସୁଖପ୍ରାପ୍ତି ଦଶମରେ କାର୍ଯ୍ୟସିଦ୍ଧି ଓ ଏକାଦଶ ଚନ୍ଦ୍ରରେ ସୁଖଲାଭ ହୁଅଇ । ଏ ଚନ୍ଦ୍ରମାନଙ୍କରେ ଗୃହାରମ୍ଭ କରିବା ଉଚିତ ।

ତଥାଚ ଘାତଚନ୍ଦ୍ର ଘାତବାର ଓ ଘାତ ତିଥିରେ ଗୃହାରମ୍ଭ କରିବ ନାହିଁ । କଲେ ଅନିଷ୍ଟ ଫଳ ଘଟଇ ।

## ଘାତଚନ୍ଦ୍ରାଦି ବାରତିଥି ଓ ନକ୍ଷତ୍ର ପ୍ରକରଣ

ମେଷେଚ ଋତେନମଘ ଜନ୍ମଷଷ୍ଠୀ, ବୃଷେ କରାପଞ୍ଚ ଶନି ଚତୁର୍ଥି
ଯୁଗ୍ମେ ନବମ୍ୟା ବାତ ମଷ୍ଟ ମିନ୍ଦୁ କୁଳିର ବାହୁ ବୁଧ ମୈତ୍ରଷଷ୍ଠୀ
ହରିରସା ମୂଳ ଶନି ନବମ୍ୟାଃ କନ୍ୟାଂଚ ବସ୍ତୁ ଦଶଶୌରିରଷ୍ଟମୀ
ତୁଲାଂଗି ଜୀବେ ଶତଭ ର ଦ୍ୱାଦଶୀ ଅଳିନଗା ଭୃଗୁପୌଷ୍ଣ ନବମ୍ୟାଃ
ଧନୁର୍ଯୁଗ ସପ୍ତଯମଞ୍ଚମିନ୍ଦୁ ମୃଗାବସ୍ୱ ବ୍ରହ୍ମକୁଜଂ ଚ ଦ୍ୱାଦଶୀ ଘଟାଷ୍ଟ
ରୁଦ୍ରାଶିବ ଚତୁର୍ଥୀ ଜୀବେ ମୀନେ ସର୍ପଦ୍ୱାଦଶୀ ଭୃଗୁର୍ବିଜଯୁଂଚ

ମେଷ ରାଶିର—ରବିବାର ଷଷ୍ଠୀ ତିଥି ମଘାନକ୍ଷତ୍ର ଓ ଜନ୍ମଚନ୍ଦ୍ର
ବୃଷ ରାଶିର—ଶନିବାର ଚତୁର୍ଥୀ ତିଥି ହସ୍ତୀ ନକ୍ଷତ୍ର ପଞ୍ଚମଚନ୍ଦ୍ର
ମିଥୁନ ରାଶିର—ସୋମବାର ଅଷ୍ଟମୀ ତିଥି ସ୍ୱାତୀ ନକ୍ଷତ୍ର ନବମଚନ୍ଦ୍ର
କର୍କଟ ରାଶିର—ବୁଧବାର ଷଷ୍ଠୀ ତିଥି ଅନୁରାଧା ନକ୍ଷତ୍ର ଦ୍ୱିତୀୟଚନ୍ଦ୍ର
ସିଂହ ରାଶିର—ଶନିବାର ନବମୀ ତିଥି ମୂଳା ନକ୍ଷତ୍ର ଷଷ୍ଠଚନ୍ଦ୍ର
କନ୍ୟାରାଶିର—ଶନିବାର ଅଷ୍ଟମୀ ତିଥି ଶ୍ରବଣା ନକ୍ଷତ୍ର ଦଶମଚନ୍ଦ୍ର
ତୁଳାରାଶିର—ଗୁରୁବାର ଦ୍ୱାଦଶୀତିଥି ଶତଭିଷା ନକ୍ଷତ୍ର ତୃତୀୟଚନ୍ଦ୍ର
ବିଛାରାଶିର—ଶୁକ୍ରବାର ନବମୀ ତିଥି ରେବତୀ ନକ୍ଷତ୍ର ସପ୍ତମଚନ୍ଦ୍ର
ଧନୁରାଶିର—ସୋମବାର ସପ୍ତମୀ ତିଥି ଦ୍ୱିତୀୟା ନକ୍ଷତ୍ର ଚତୁର୍ଥଚନ୍ଦ୍ର
ମକରରାଶିର—ମଙ୍ଗଳବାର ଦ୍ୱାଦଶୀ ତିଥି ରୋହିଣୀନକ୍ଷତ୍ର ଅଷ୍ଟମଚନ୍ଦ୍ର
କୁମ୍ଭରାଶିର—ଗୁରୁବାର ଚତୁର୍ଥୀ ତିଥି ଆଦ୍ରାନକ୍ଷତ୍ର ଏକାଦଶଚନ୍ଦ୍ର
ମୀନରାଶିର—ଶୁକ୍ରବାର ଦ୍ୱାଦଶୀତିଥି ଅଶ୍ଳେଷା ନକ୍ଷତ୍ର ଓ ଦ୍ୱାଦଶଚନ୍ଦ୍ର

କର୍ତ୍ତା ରାଶିକୁ ବାର ତିଥି ନକ୍ଷତ୍ର ଓ ଚନ୍ଦ୍ରାଦି ଏପରି ଥିଲେ ଗୃହାରମ୍ଭ କରିବ ନାହିଁ ।

## ରବଶୁଦ୍ଧି

ଜନ୍ମରାଶେଃ ଶୁଭଃସୂର୍ଯ୍ୟ ସ୍ତ୍ରୀ ଷଷ୍ଠ ଦଶଲାଭଗଃ
ଦ୍ୱିପଞ୍ଚ ନବମୋପ୍ୟେଷ୍ଟ ହୟୋଦଶ ଦିନାତ୍ ପରମ୍ ।

କର୍ତ୍ତା ରାଶିକୁ ରବ ତୃତୀୟ ଷଷ୍ଠ ଦଶମ ଏକାଦଶ ଶୁଭ ଦାୟକ । ସଙ୍କାନ୍ତିରେ ତେରଦିନ ଉତ୍ତରୁ ଦ୍ୱିତୀୟ ପଞ୍ଚମ ନବମ-ମାନେ ଶୁଭଦାୟକ ଅଟନ୍ତି । ଚତୁର୍ଥ ପଞ୍ଚମ ସପ୍ତମ ଅଷ୍ଟମ ଓ ଦ୍ୱାଦଶ ରବ ଶୁଭ ଦେବାବେଳେ ମଙ୍ଗଳକର ନୁହନ୍ତି ।

## ବାରମୃତ ଯୋଗଃ

ଆଦିତ୍ୟ ହସ୍ତା ଗୁରୁ ପୁଷ୍ୟଯୋଗଃ ବୁଧୋନୁରାଧାଶନରୋହିଣୀଚ
ସୌମ୍ୟେଚ ସୌମ୍ୟେ କୁଜରେବତୀଚଶୁକ୍ରଶନରମୃତସିଦ୍ଧ ଯୋଗ,

ରବବାରେ ହସ୍ତା, ଗୁରୁବାରେ ପୁଷ୍ୟା, ବୁଧବାରେ ଅନୁରାଧା ଶନବାରେ ରୋହିଣୀ, ସୋମବାରେ ମୃଗଶିର, ମଙ୍ଗଳବାରେ ରେବତୀ ଓ ଶୁକ୍ରବାରେ ଅଶ୍ୱିନୀ ନକ୍ଷତ୍ର ହେଲେ ବାରମୃତ ଯୋଗ ହୁଏ । ଏଥିରେ ସର୍ବକାର୍ଯ୍ୟ ପ୍ରଶସ୍ତ ।

## ଲଗ୍ନ ଯୋଗ

ଦିନ ମିଥୁନ ଗୃପାଳି ତୁଳକୁମ୍ଭାଶୁଭ ବହାଃ
ବୃଷ ମେଷୋ ନିଶାୟାଂ ଚ ମକରସ୍ୟାର୍ଦ୍ଧମେବ ଚ ।

ଦିବସ ଶୁଭପ୍ରଦ ମିଥୁନ, ତୁଳା, କନ୍ୟା, ଧନୁ, ବୃଶ୍ଚ ଓ କୁମ୍ଭ ଏହି ଲଗ୍ନମାନ ପ୍ରଶସ୍ତ । ରାତି ଶୁଭରେ ବୃଷ ମେଷ ଏବଂ ମକର ଲଗ୍ନରେ କେବଳ ପ୍ରଥମାର୍ଦ୍ଧ ପ୍ରଶସ୍ତ ।

## ବିଷ୍ଟିକରଣ ଜ୍ଞାନଂ

କୃଷ୍ଣ ତୃତୀୟା ଦଶମୀ ଚ ରାତ୍ରୌ ଦିବା ସପ୍ତମୀ ଚତୁର୍ଦ୍ଦଶୀ ଚ
ଶୁକ୍ଳ ଚତୁର୍ଥୀ ଚୈକାଦଶୀ ନିଶିଅଷ୍ଟମୀପୌର୍ଣ୍ଣମୀଦିବା ଚ ବିଷ୍ଟିଃ

କୃଷ୍ଣପକ୍ଷ ତୃତୀୟା ଓ ଦଶମୀ ଏଥିର ଶେଷଭାଗ ବିଷ୍ଟି
ସପ୍ତମୀ ଓ ଚତୁର୍ଦ୍ଦଶୀର ଆଦ୍ୟଭାଗ ବିଷ୍ଟି
ଶୁକ୍ଳପକ୍ଷ ଚତୁର୍ଥୀ ଏକାଦଶୀ ଶେଷଭାଗ ବିଷ୍ଟି

ଅଷ୍ଟମୀ ଓ ପୌର୍ଣ୍ଣମୀ ତିଥିରେ ଆଦ୍ୟଭାଗ ବିଷ୍ଟି ଅଟେ ଏଥିରେ କୌଣସି କର୍ମ କରିବ ନାହିଁ ।

## ବିଷ୍ଟି ଯୋଗ ଭଙ୍ଗ

ଯଦି ବିଷ୍ଟି ବ୍ୟତିପାତୌ ଦିନେ ଶୃପି ଶୁଭଂ ଭବେତ୍
ହନ୍ୟତେଽମୃତ ଯୋଗେନଂ ଭାସ୍କରେଣ ତମୋଯଥା ।
ମୃତ୍ୟୁଯୋଗ ସମ୍ପ୍ରେନ ଯତ୍ କାଞ୍ଚନ୍ନ ବିଦୃଶ୍ୟତେ
ଶଙ୍କ୍ୟନ୍ତେଚ ଗ୍ରହା ସର୍ବେ ସିଂହଦୃଷ୍ଟ୍ୱା ଯଥାଗଜାଃ ।

ଯଦି ବିଷ୍ଟି ସହିତ ବ୍ୟତିପାତ ଯୋଗ ସଂଯୋଗ ହୋଇ ବାରାମୃତ ଯୋଗ ପାଇଥିବ ତେବେ ଦୋଷ ହୁଏନାହିଁ । ସର୍ବକର୍ମ କରଣୀୟ ସିଂହକୁ ଦେଖି ଗଜ ଭୟରେ ପଳାଇବା ପରି ଅଶୁଭ ଗ୍ରହମାନେ ଶୁଭ ସଙ୍କୁନ ଦେଖି ଶଙ୍କାକରି ପଳାଇଯାନ୍ତି ।

## ଗୃହପ୍ରବେଶ ଯୋଗ

ପୁନର୍ବସୁଃ ଶତଭିଷା ମୃଗସ୍ୱାତିଶ୍ଚ ରୋହିଣୀ
ହସ୍ତା ଚ ରେବତୀ ଚୈବ ଶ୍ଚୈତ୍ତର ଭାଦ୍ରବଂ ତଥା ।
ମୂଳା ଶ୍ଚୈତ୍ତରାଷାଢ଼ା ଚ ଧନିଷ୍ଠା ଚ ଶୁଭମଘା
କନ୍ୟା କୁମ୍ଭ ବୃଷାଳୀ ଚ ସିଂହେ ମିଥୁନ ଏବ ଚ
ବାରେ ଶୁକ୍ରେ ଶନି ସୋମେ ଶୁକ୍ରଗୁରୁ ବୁଧେଃ ଶୁଭଃ

ପୁନର୍ବସୁ, ଶତଭିଷା, ମୃଗଶିରା, ସ୍ୱାତି, ରୋହିଣୀ, ହସ୍ତା, ରେବତୀ, ଉତ୍ତରଭଦ୍ର, ମୂଳା, ଉତ୍ତରଷାଢ଼ା, ଧନିଷ୍ଠା ଓ ମଘା, ଏହି ନକ୍ଷତ୍ରମାନ ଗୃହ ପ୍ରବେଶରେ ଶୁଭ ପ୍ରଦାୟକ । କନ୍ୟା, କୁମ୍ଭ, ବୃଷ ବୃଶ୍ଚିକ, ସିଂହ, ମିଥୁନ ଏ ଲଗ୍ନମାନେ ଶୁଭକାରକ ଏତଦ୍ଭିନ୍ନ ଗୁରୁ, ଶନି, ସୋମ, ବୁଧ ଓ ଶୁକ୍ରବାର ଗୃହ ପ୍ରବେଶରେ ପ୍ରଶସ୍ତ ଅଟେ ।

ପରିଘାଦ୍ୟ ଦ୍ୱୟ ବୃଦ୍ଧିଂ ଶୁଭକର୍ମ ତଥାପରଂ
ତ୍ୟାଜ୍ୟଂ ଚ ପଞ୍ଚ ବିଷ୍କୁମ୍ଭେ ଧୃତେଷ୍ଟୁ ଶୂଳଯୋଗକେ ।
ଗଣ୍ଡେଷ୍ଟା ଗଣ୍ଡେୟୋଃ ଷଷ୍ଠୁରଷ୍ଟ ବ୍ୟାଘାତ ବଜ୍ରୟୋ
ବୈଧୃତ୍ୟ ବ୍ୟତିପାତୌ ଚ ସମସ୍ତଂ ପରିବର୍ଜ୍ଜୟେତ ।

ପରିଘ ଯୋଗର ଆଦ୍ୟ ଦୁଇପାଦ ବିଷ୍କୁମ୍ଭଯୋଗର ଆଦ୍ୟପାଞ୍ଚ ଦଣ୍ଡ, ଶୂଳ ଯୋଗର ଆଦ୍ୟ ଛଅଦଣ୍ଡ ବ୍ୟାଘାତ ଓ ବଜ୍ର ଏହି ଦୁଇ ଯୋଗର ଆଦ୍ୟ ଆଠଦଣ୍ଡ ଅଶୁଭ ଅଟେ ଏହାଛଡ଼ା ବୈଧୃତି ଓ ବ୍ୟତିପାତ ସର୍ବଦା ବର୍ଜନୀୟ ।

ଆଦ୍ୟତ୍ୟେ ଯୁକ୍ କର୍କ୍ଟ ଝୀପ୍ସୁ ମିଥୁନ ଘଟାଳୀ
ମାସଯୁକ୍ତେ ସ୍ଥିରେଚେତ୍
କେନ୍ଦ୍ରାଷ୍ଟରେ ତ୍ରିକୋଣ ହିବୁକ ଶୁଭଗତୈଃ
ସ୍ୱଗୃହେ ଗ୍ରାମ୍ୟଲଗ୍ନେ
ଶୁଭଂ ସ୍ୱାତ୍ ବିଶାଖା ଦିତିଫଣୀ ଦହନୋ
ଗ୍ରେତରେ ସୂର୍ଯ୍ୟସିଦ୍ଧେ
ସଦ୍ମ ପ୍ରବେଶ ଶୁଭଂସ୍ୟା ତିଥିବାୟୁତ ବିପ୍ରୌ
ଭୌମସୂର୍ଯ୍ୟତ୍ତରାହ୍ନି ।

ଯୁକ୍ ଯେ ତୁଳା, କର୍କ ଯେ କର୍କଟ, ଝିପ୍ସୁ ଯେ ମେଷ, ମିଥୁନ ଘଟ ଯେ କୁମ୍ଭ, ଅଳି ଯେ ବିଛା । ଏ ମାସମାନଙ୍କରେ, କେନ୍ଦ୍ର ଯେ ଲଗ୍ନର ଚତୁର୍ଥ, ସପ୍ତମ ଦଶମ ତ୍ରିକୋଣ ଯେ ପଞ୍ଚମ ନବମ ଅଷ୍ଟକା ଯେ ଅଷ୍ଟମ ଦ୍ୱାଦଶ ଏ ସ୍ଥାନମାନଙ୍କରେ ଶୁଭ ଗ୍ରହ ନଥିବେ ଆଉ ଲଗ୍ନର ତୃତୀୟ ଏକାଦଶ ଷଷ୍ଠ ସ୍ଥାନରେ ପାପଗ୍ରହମାନେ ନଥିବେ ଗ୍ରାମ୍ୟଲଗ୍ନ ଯେ ମିଥୁନ କନ୍ୟା ତୁଳା ଧନୁ ବିଚ୍ଛା କୁମ୍ଭ ଲଗ୍ନ ହୋଇଥିବ ଏପରି ଶୁଭ ସମୟରେ ଗୃହ ପ୍ରବେଶ କରିବ । ସ୍ୱାତି ଯେ ବିଶାଖା ଅଦିତି ଯେ ପୁନର୍ବସୁ, ଫଣୀ ଯେ ଅଶ୍ଳେଷା, ଦହନ ଯେ କୃତ୍ତିକା, ଉଗ୍ରଗଣ ଯେ ତିନପୂର୍ବା ଅର୍ଥାତ୍ ପୂର୍ବାଫାଲଗୁନୀ, ପୂର୍ବାଷାଢ଼ା ପୂର୍ବଭାଦ୍ର, ମଘା ଓ ରେବତୀ ଏ ନକ୍ଷତ୍ରମାନଙ୍କୁ ବର୍ଜ୍ଜନ କରିବ । ଶନି, ରବି ଓ ମଙ୍ଗଳବାରକୁ ଛାଡ଼ି ତାରାଶୁଦ୍ଧି ଚନ୍ଦ୍ର ଶୁଦ୍ଧି ଓ ରବି ଶୁଦ୍ଧିରେ ଶୁଭ ବେଳାରେ ଗୃହ ପ୍ରବେଶ କରିବ । ମତାନ୍ତରେ ଶନିବାର ଶୁଭ ।

## ଲଗ୍ନର ଶୁଭାଶୁଭ ଫଳ

ଲଗ୍ନସ୍ୟ ଦ୍ୱାଦଶେବାପି ଚତୁର୍ଥେ ଚାଷ୍ଟମେ ତଥା
ଆୟୁର୍ଷି କଣ୍ଟକେଚୈବ ନବମେବାପି ପଞ୍ଚମେ
ଶୁକ୍ରୋ ବୃହସ୍ପତିସ୍ୟାଡଂ ଶୁଭଂସ୍ୟାତ୍ନାନ୍ନ ସଂଶୟଃ

ଶୁଭ ଗ୍ରହମାନେ ଲଗ୍ନର ଦ୍ୱାଦଶ, ଚତୁର୍ଥ ଓ ଅଷ୍ଟମ ସ୍ଥାନରେ ଥିବେ ଆୟୁ ସେ ଅଷ୍ଟମ ଓ ଦଶମ କଣ୍ଟକ କେନ୍ଦ୍ର, ନତୁବା ନବମ-ପଞ୍ଚମରେ ଶୁକ୍ର କିମ୍ବା ବୃହସ୍ପତି ଥିବେ ଓ ଗୃହପ୍ରବେଶର ଲଗ୍ନ ସମୟୁପ୍ରତି ଚନ୍ଦ୍ର ବଳକାରକ ଥିବେ ଏପରି ହୋଇଥିଲେ ଗୃହ ପ୍ରବେଶ କରିବ, ଶୁଭଫଳ ପ୍ରାପ୍ତ ହୁଏ ।

## ବାରଫଳ

ଶଶି କଳହ ଦାରିଦ୍ର୍ୟ ଭାସ୍କରେ ଗୃଗ୍ନିଦାହଃ
ଶୋକମପି ରବି ପୁତ୍ରେ ଭୂମି ପୁତ୍ରେଚ ମୃତ୍ୟୁଃ ।
ବୁଧ ଗୁରୁ ରବିବାରେ ସଦ୍ଗୃକାର୍ଯ୍ୟଂଚ କୁର୍ଯ୍ୟା
ଦ୍ଧନ୍ତିବଦନ୍ତି ବରାହେ ମାଳଣ୍ଡ ବୃତ୍ତିରେଷା ।

ଗୃହାରମ୍ଭ ପାଇଁ ସୋମବାର ଶୁଭଦେଲେ କଳହ ମୂଳ ଓ ଦାରିଦ୍ର୍ୟ ହୁଅନ୍ତି । ରବିବାରେର ଅଗ୍ନିଭୟ ଶନିବାରରେ ଶୋକାତୁର ମଙ୍ଗଳବାରରେ ମୃତ୍ୟୁଭୟ ଘଟାଏ । ବୁଧ ଗୁରୁ ଶୁକ୍ର ଏହି ତିନିବାର ଗୃହାରମ୍ଭ ପକ୍ଷେ ମଙ୍ଗଳ ପ୍ରଦାୟକ ଅଟନ୍ତି ।

## ତ୍ର୍ୟହସ୍ପର୍ଶ ତଥିଜ୍ଞାନ

ତ୍ର୍ୟହସ୍ପର୍ଶାନ୍ତି ସଦେବ ଦୁକ୍ତଂ ତଦପସନ୍ୟଃ କ୍ରମିଭିର୍ବିଚିଧ୍ୟଯୁଃ
ବିବାହ ଯାତ୍ରାଶୁଭ ପୁଷ୍ଟି କର୍ମ ସର୍ବଂନକାର୍ଯ୍ୟଂବିଦ୍ଧିନସ୍ପର୍ଶେ ତୁ
ତଥ୍ୟନ୍ତିଦ୍ୱୟୁମେକୋଦ୍ଦିନବାରଃ ସ୍ଫୃଟେତିଳୀସ ଭୂଭବତ୍ୟବମଦ୍ଦିନଂ ।

କ୍ଷୟ ତିଥିଯୁକ୍ତ ଏକଦିନରେ ତିନି ତିଥି ସଂଯୁକ୍ତ ହୋଇଲେ ତ୍ର୍ୟହସ୍ପର୍ଶ ତଥି ହୁଏ । ଏଥିରେ କୌଣସି ଶୁଭକାର୍ଯ୍ୟ କରାଯାଏ ନାହିଁ । ଏହି ଦିନକୁ ଅବମ ମଧ୍ୟ ଦିନ କୁହାଯାଏ ।

ପଡିପଦେକାଦଶୀ ଷଷ୍ଠୀ ନନ୍ଦାଖ୍ୟେୟାମନଷିଭିଃ
ଦ୍ୱିତୀୟା ଦ୍ୱାଦଶୀ ଚୈବ ଭଦ୍ରାପ୍ରୋକ୍ତାଚ ସପ୍ତମୀ
ତ୍ରୟୋଦଶ୍ୟଷ୍ଟମୀଚୈବ ତୃତୀୟାଚ ତଥାଜୟା
ଚତୁର୍ଥୀ ନବମୀରିକ୍ତା ଚତୁର୍ଦ୍ଦଶୀ ତିଥିତଥା
ପଞ୍ଚମୀ ଦଶମୀ ଚୈବ ନଷ୍ଟଚନ୍ଦ୍ର ଚ ପୂର୍ଣ୍ଣିମୀ
ପୂର୍ଣ୍ଣାହ୍ୱ ତିଥୟୋ ପୋକ୍ତାଃ ସର୍ବଦାଚ ମନୀଷିଭିଃ

ପ୍ରତିପ ଷଷ୍ଠୀ ଏକାଦଶୀ ନନ୍ଦା ତିଥି, ଦ୍ୱିତୀୟା ସପ୍ତମୀ ଦ୍ୱାଦଶୀ ଭଦ୍ରା, ତୃତୀୟା ଅଷ୍ଟମୀ ତ୍ରୟୋଦଶୀ ଜୟା, ଚତୁର୍ଥୀ ନବମୀ ଚତୁର୍ଦ୍ଦଶୀ ରିକ୍ତା; ପଞ୍ଚମୀ ଦଶମୀ ପୌର୍ଣ୍ଣମୀ ଏ ପର୍ଣ୍ଣା ତିଥି ଏହା ସଙ୍ଗେ ନଷ୍ଟ ଚନ୍ଦ୍ର ଯେ ଅମାବାସ୍ୟା ଏହା ପୂର୍ଣ୍ଣା ତିଥିରେ ଗଣନା ହେଉଥିଲେ ମଧ୍ୟ ଏହି ତିଥିରେ ସକଳ କାର୍ଯ୍ୟ ବର୍ଜ୍ଜନୀୟ ।

## ମାସଦଗ୍ଧା ତିଥି

ଦ୍ୱିତୀୟା ମୀନ ଧନୁ ଷୋ ଚତୁର୍ଥ୍ୟାଂ ବୃଷକୁମ୍ଭୟୋଃ
ମେଷ କର୍କଟୟୋଃ ଷଷ୍ଠୀ କନ୍ୟାୟାଂ ମିଥୁନେଽଷ୍ଟମୀ
ଦଶମୀ ବୃଶ୍ଚିକେ ସିଂହେ ଦ୍ୱାଦଶୀ ମକରେ ତୁଲେ
ଏତେଷାଂ ମାସଦଗ୍ଧାଚଂ ସର୍ବ କର୍ମାଣି ବର୍ଜ୍ଜୟେତ୍ ।

ମେଷ ମାସରେ ଶୁକ୍ଳ ଷଷ୍ଠୀ ବୃଷ ମାସରେ କୃଷ୍ଣ ଚତୁର୍ଥୀ ମିଥୁନ ମାସରେ ଶୁକ୍ଳ ଅଷ୍ଟମୀ କର୍କଟମାସର କୃଷ୍ଣ ଷଷ୍ଠୀ ସିଂହ ମାସର ଶୁକ୍ଳ ଦଶମୀ କନ୍ୟାମାସର କୃଷ୍ଣ ଅଷ୍ଟମୀ ତୁଳାମାସର ଶୁକ୍ଳ ଦ୍ୱାଦଶୀ ବୃଶ୍ଚି ମାସର କୃଷ୍ଣ ଦଶମୀ ଧନୁମାସର ଶୁକ୍ଳ ଦ୍ୱିତୀୟା ମକରମାସର କୃଷ୍ଣ ଦ୍ୱାଦଶୀ କୁମ୍ଭ ମାସର ଶୁକ୍ଳଚତୁର୍ଥୀ ଓ ମୀନମାସର କୃଷ୍ଣଦ୍ୱିତୀୟା ମାସ ଦଗ୍ଧା ବା ଦିନଦଗ୍ଧା ତିଥିଅଟେ । ଏଥିରେ ସର୍ବକର୍ମ ବର୍ଜ୍ଜନୀୟ ।

## ଗୃହାରମ୍ଭେ ତିଥିଫଳ

ତୃତୀୟାସପ୍ତମୀଚୈବ ଅଷ୍ଟମୀ ଚ ତ୍ରୟୋଦଶୀ
ଦ୍ୱିତୀୟାସ୍ତମ୍ଭଲଗ୍ନେଚ ବେଶ୍ମକାର୍ଯ୍ୟେ ଶୁଭବର୍ଦ୍ଧ

ଗୃହଂ କୃତ୍ୱା ପ୍ରତିପଦୋ ଦୁଃଖଂପ୍ରାପ୍ନୋତ୍ୟନନ୍ତଧ୍ୟଶଃ
ଅର୍ଥକ୍ଷୟ ତଥାଷଷ୍ଠ୍ୟାଂ ପଞ୍ଚମ୍ୟାଶଚ ଚଞ୍ଚଳଃ
ଚୈାରଭୟଂ ଦଶମ୍ୟାଂତୁ ଚୈକାଦଶ୍ୟାଂ ନୃପାତ୍ ଭୟଂ ।
ପତ୍ନୀନାଶସ୍ତୁପୌର୍ଣ୍ଣମ୍ୟାଂ ପତ୍ନନାଶ କୁହୌତଥା
ରିକ୍ତାୟାଂ ସର୍ବକାର୍ଯ୍ୟାଣି ନାଶମାୟାନ୍ତି ସର୍ବଦା ।

ଦ୍ୱିତୀୟା ସପ୍ତମୀ ଅଷ୍ଟମୀ ତ୍ରୟୋଦଶୀ ତିଥିରେ ଗୃହାରମ୍ଭ ପ୍ରଶସ୍ତ କର୍ତ୍ତାର ଶୁଭଫଳ ହୁଏ ।

ଏତଦ୍‌ଭିନ୍ନ ପ୍ରତିପଦ ତିଥିରେ ଘୋର ଦୁଃଖ, ଷଷ୍ଠୀ ତିଥିରେ ଧନ ନାଶ, ପଞ୍ଚମୀରେ ଚିତ୍ତ ଚଞ୍ଚଳ ଦଶମୀରେ ଚୌରଭୟ ଏକାଦଶୀରେ ରାଜଭୟ,ପୌର୍ଣ୍ଣମୀରେ ସ୍ତ୍ରୀ ନାଶ ଓ ଅମାବାସ୍ୟାରେ ଗୃହାରମ୍ଭ କଲେ ଗୃହସ୍ୱାମୀର ବିନାଶ ହୁଏ । ଏହା ଛଡ଼ା ରିକ୍ତାତିଥି ଚତୁର୍ଥୀ ନବମୀ ଓ ଚତୁର୍ଦ୍ଦଶୀରେ ଶୁଭ ଦେଲେ ଅମଙ୍ଗଳ ଅଟେ ।

## ଦଗ୍ଧା ନକ୍ଷତ୍ର

ମଘାର୍କେ ମଙ୍ଗଲେ ବାପି ହସ୍ତ ଚନ୍ଦ୍ରବାରେ ତଥା
ମୈତ୍ରେ ଭାର୍ଗବ ବାରେଚ ସ୍ୱାତି ପଣ୍ଡିତ ବାସରେ
ଆର୍ଦ୍ରା ଶନି ଦିନେ ବାପି ଗୁରୌ ଶତଭିଷାଂଶୁଭ
ରେବତ୍ୟାତାଃ ସୃବର୍ଜ୍ଜେଯ୍ୟାଃ ଦଗ୍‌ଧାସ୍ତୁ ନକ୍ଷତ୍ରସ୍ତୁ ତାଂ

ରବିବାରେ ମଘା ମଙ୍ଗଳବାରେ ମୃଗଶିର ସୋମବାରେ ଅନୁରାଧା ଶୁକ୍ରବାରେ ସ୍ୱାତି ବୁଧବାରେ ଆର୍ଦ୍ରା ଶନିବାରେ ଶତଭିଷା ଗୁରୁବାରେ ରେବତୀ ନକ୍ଷତ୍ର ହେଲେ ନକ୍ଷତ୍ର ଦଗ୍‌ଧା ହୁଏ । ଏହି ଦିନମାନଙ୍କରେ ଗୃହାଦି ଶୁଭକର୍ମ କରିବା ନିଷେଧ ଅଟେ ।

## ତିଥ୍ୟମୃତ ଯୋଗ

ଚନ୍ଦ୍ରାର୍କୟୋ ର୍ଭବେତ୍ ପୂର୍ଣ୍ଣା କୁଜେଭଦ୍ରାଜୟା ଗୁରୌ
ବୁଧେମନ୍ଦୌ ଚ ନନ୍ଦାୟାଂ ଶୁକ୍ରେରିକ୍ତାଽମୃତାତିଥି ।

ରବି ଓ ସୋମବାରେ ପୂର୍ଣ୍ଣା ତିଥି, ମଙ୍ଗଳବାରେ ଭଦ୍ରା ତିଥି ଗୁରୁବାରେ ଜୟା ଶୁକ୍ରବାରେ ରିକ୍ତା ଓ ଶନିବାରେ ନନ୍ଦା ତିଥି ହେଲେ ତିଥ୍ୟମୃତ ଯୋଗ ହୁଏ । ଏଥିରେ ଶୁଭକାର୍ଯ୍ୟ କରଣୀୟ ।

## ସିଦ୍ଧାମୃତ ଯୋଗ

ଶୁକ୍ରେ ନନ୍ଦା ବୁଧେ ଭଦ୍ରା ଶନୌରିକ୍ତା କୁଜେଜୟା
ଗୁରୌ ପୂର୍ଣ୍ଣାଂଚ ସଂଯୁକ୍ତା ସିଦ୍ଧି ଯୋଗଃ ପ୍ରକୀର୍ତ୍ତିତଃ ।

ଶୁକ୍ରବାରେ ନନ୍ଦା ବୁଧବାରେ ଭଦ୍ରା ଶନିବାରେ ରିକ୍ତା ମଙ୍ଗଳବାରେ ଜୟା ଓ ଗୁରୁବାରେ ପୂର୍ଣ୍ଣା ତିଥି ହେଲେ ସିଦ୍ଧା ମୃତ ଯୋଗ ହୁଏ ଏ ଯୋଗରେ ସର୍ବକାର୍ଯ୍ୟ ପ୍ରଶସ୍ତ ।

## ବିଷ ଯୋଗ

ଅମୃତ ସିଦ୍ଧ ଯୋଗସ୍ତୁ ଯଦ୍ୟେକସ୍ମିନ୍ ଦିନେଭବେତ୍
ତତ୍ ଦିନେତୁ ଭବେତ୍ ଦୁଷ୍ଟଂ ମଧୁସର୍ପି ଯଥା ବିଷଂ

ଯଦ୍ୟପି ନକ୍ଷତ୍ରାମୃତ ଯୋଗ ଓ ସିଦ୍ଧାମୃତ ଯୋଗ ଏକଦିନେ ସଂଯୋଗ ହୁଅନ୍ତି ତେବେ ସେହି ଯୋଗଟି ଘୃତ ଓ ମଧୁ ମିଶ୍ରିତ ହେଲେ ଯେପରି ବିଷ ହୋଇଯାଏ ସେହିପରି ଯୋଗମିଳିତ ହେଲେ ବିଷ ଯୋଗ ହୁଏ । ଏଥିରେ କୌଣସି କର୍ମ କରିବ ନାହିଁ ।

## ମୃତ୍ୟୁ ଯୋଗ

ଭୌମ୍ୟାଦିତ୍ୟେ ସଦାନନ୍ଦା ଭଦ୍ରାକବି ଶଶାଙ୍କୟୋଃ
ଜୟାଚନ୍ଦ୍ର ସୁତେଚୈବ ରିକ୍ତାବାଚ ସତ୍ୟେବାଚ
ପୂର୍ଣ୍ଣାଶନୈଶ୍ଚରେଜ୍ଞେୟ ମୃତ୍ୟୁଃ ଯୋଗ ପ୍ରକୀର୍ତ୍ତିତଃ

ରବିବାରେ ଓ ମଙ୍ଗଳବାରେ ନନ୍ଦା ତିଥି ଶୁକ୍ରବାରେ ଓ ସୋମବାରେ ଭଦ୍ରା ତିଥି ବୁଧବାରେ ଜୟା ତିଥି ଗୁରୁବାରେ ରିକ୍ତା ତିଥି ଓ ଶନିବାରେ ପୂର୍ଣ୍ଣା ତିଥି ହେଲେ ମୃତ୍ୟୁ ଯୋଗ ହୁଏ । ସୁବର୍ଣ୍ଣ ଲାଭ ହେଲେ ମଧ୍ୟ ଏ ଯୋଗରେ ଗୃହ କର୍ମ୍ମ କୌଣସି କାର୍ଯ୍ୟ ଆରମ୍ଭ କରିବ ନାହିଁ ।

## ନକ୍ଷତ୍ରାମୃତ ଯୋଗ

ଧ୍ରୁବଗୁରୁକର ମୂଳା ପୌଷ୍ଣ ସନ୍ଧର୍କବାରେ
ହରିଣମୃଗା ବିଧିଯୁକ୍ତେ ଫାଲଗୁନୀ ଭଦ୍ରଯୁଗ୍ମେ
ଦିବସ କଲତ୍ରୁରଙ୍କୌ ଶର୍ବରୀ ନାଥବାରେ
ଗୁରୁ ଯୁଗାନଲବାରେ ପାନ୍ତ୍ୟ ପୌଷ୍ଣ ନକୌଜେ

ଦଦ୍ୱନବର୍ଧି ଶତାଖ୍ୟା ମୈତ୍ରଭଂ ସୌମ୍ୟବାରେ
ମରୁଦଦ୍ଭନ୍ତ ପୁଷ୍ୟା ମୈତ୍ରଭଂ ଜୀବବାରେ ।
ଭଗଯୁଗ ଜଯୁଗଶ୍ବୋ ବସ୍ତୁମୈତ୍ରେସିତାଦ୍ଧେ
ଶ୍ବସନ କମଳଯୋନ ସୌରିବାରେଽମୃତାନ ।

ରବିବାରେ ତିନଉତ୍ତର ଅର୍ଥାତ୍ ଉତ୍ତରଫାଲଗୁନୀ ଉତ୍ତରା-ଷାଢ଼ା ଉତ୍ତରଭାଦ୍ର ରୋହିଣୀ ହସ୍ତା ମୂଳା ରେବତୀ, ସୋମବାରେ ଶ୍ରବଣା ଧନିଷ୍ଠା ରୋହିଣୀ ମୃଗଶିର ପୂର୍ବାଫାଲଗୁନୀ ଉତ୍ତରାଫାଲଗୁନୀ ପୂର୍ବଭାଦ୍ର ଉତ୍ତରଭାଦ୍ର ହସ୍ତା ଅଶ୍ୱିନୀ, ମଙ୍ଗଳବାରେ ପୁଷ୍ୟା ଅଶ୍ଳେଷା କୃତ୍ତିକା ସ୍ୱାତି ଉତ୍ତରଭାଦ୍ର ରେବତୀ ବୁଧବାରେ କୃତ୍ତିକା ରୋହିଣୀ ଶତଭିଷା ଅନୁରାଧା, ଗୁରୁବାରେ ସ୍ୱାତି ପୁନର୍ବସୁ ପୁଷ୍ୟା ଅନୁରାଧା ଶୁକ୍ରବାରେ ପୂର୍ବାଫାଲ୍‌ଗୁନୀ ଉତ୍ତରଫାଲଗୁନୀ ପୂର୍ବଭାଦ୍ର ଉତ୍ତରଭାଦ୍ର ଅଶ୍ୱିନୀ ଶ୍ରବଣା ଅନୁରାଧା ଓ ଶନିବାରେ ସ୍ୱାତି ଓ ରୋହିଣୀ ନକ୍ଷତ୍ର ହେଲେ ନକ୍ଷତ୍ରାମୃତ ଯୋଗହୁଏ । ଏ ଯୋଗରେ ଶୁଭକର୍ମ କରଣୀୟ ।

## ନକ୍ଷତ୍ର ଫଳମାହ

ଅଶ୍ୱିନୀ ରୋହିଣୀ ମୂଳାହ୍ୟୁତ୍ତରତ୍ରୟମେବଚ
ସ୍ୱାତି ହସ୍ତାନୁରାଧାସୁ ସ୍ତମ୍ଭାରମ୍ଭଃ ପ୍ରଶସ୍ୟତେ ।

ଅଶ୍ୱିନୀ ରୋହିଣୀ ମୂଳା ଉତ୍ତରାଫାଲଗୁନୀ, ଉତ୍ତରଭାଦ୍ର ଉତ୍ତରଷାଢ଼ା ହସ୍ତା ସ୍ୱାତି ଓ ଅନୁରାଧା ଏହି ନକ୍ଷତ୍ରମାନେ ସ୍ତମ୍ଭା-ରୋପଣ କାର୍ଯ୍ୟରେ ଶୁଭ ପ୍ରଦାୟକ ଅଟନ୍ତି ।

ଆଦିତ୍ୟ ହସ୍ତରୋହିଣୀ ମୃଗଶିରା ଜ୍ୟେଷ୍ଠାଧନିଷ୍ଠାଦ୍ଧିକା
ପୌଷ୍ଣାବସ୍ତ୍ର ମଘାନୁରାଧା ଗୁରୁଭଃ ଶୁଦ୍ଧୈଃପ୍ରବେଶଃ ପ୍ରତି
ସୌମ୍ୟାନାଂ ଦିବସେଽମ ପାପରହିତେଯୋଗେଽନିତେନ୍ଦ୍ରେତଥୌ
ବସ୍ତୁ ତ୍ୟକ୍ତଦିନେ ବଦନ୍ତ ମୁନୟୋ ସଦ୍ମା ଦିକାର୍ଯ୍ୟଂଶୁଭଂ

ହସ୍ତା ଶ୍ରବା ରୋହିଣୀ ମୃଗଶିର ଜ୍ୟେଷ୍ଠା ଧନିଷ୍ଠା ଉତ୍ତରଭାଦ୍ର ରେବତୀ ଶ୍ରବଣା ମଘା ଅନୁରାଧା ପୁଷ୍ୟା ଉତ୍ତରଫାଲଗୁନୀ ଏ ନକ୍ଷତ୍ରମାନେ ଗୃହ ପ୍ରବେଶାଦି କାର୍ଯ୍ୟରେ ଶୁଭପ୍ରଦ ।

## ପକ୍ଷଫଳ ଜ୍ଞାନଂ

ସପ୍ତମୀ ତୃତୀୟା ଷଷ୍ଠୀ ଚୈକାଦଶୀ ଦ୍ୱିପକ୍ଷୟୋଃ
ଶୁକ୍ଳପକ୍ଷେ ଦ୍ୱିତୀୟାଚ ପଞ୍ଚମୀ ନବମୀ ତଥା

ସପ୍ତମୀ ତୃତୀୟା ଏକାଦଶୀ ଷଷ୍ଠୀ ଓ ଶୁକ୍ଳ ଦୁଇପକ୍ଷରେ ଶୁଭ କେବଳ ଶୁକ୍ଳ ପକ୍ଷରେ ଦ୍ୱିତୀୟା ନବମୀ ପଞ୍ଚମୀ ଶୁଭ କୃଷ୍ଣ-ପକ୍ଷରେ ଚତୁର୍ଥୀ ଓ ଦ୍ୱାଦଶୀ ଏ ଶୁଭ ।

ଶୁକ୍ଳ ପକ୍ଷେ ଭବେତ୍ ସୌଖ୍ୟଂ ତସ୍କରତା ଭବେତ୍
ତସ୍ମାତ୍ ଶୁକ୍ଳେଚ କର୍ତ୍ତବ୍ୟ ଯଦିଚେତ୍ ଶ୍ରିୟମାତ୍ମନଃ

ଶୁକ୍ଳ ପକ୍ଷରେ ଗୃହାରମ୍ଭ କଲେ ସୁଖ ବୃଦ୍ଧି କୃଷ୍ଣ ପକ୍ଷରେ ଚୌର ଭୟ ହୁଏ । ଏହି କାରଣରୁ ଶୁକ୍ଳ ପକ୍ଷରେ ଗୃହାରମ୍ଭ କରିବା ଶାସ୍ତ୍ର ସମ୍ମତ ।

କୃଷ୍ଣେ ବଳବନ୍ତି ତାରା ଶୁକ୍ଳେ ଚନ୍ଦ୍ରୋଭବତ୍ତତ
ତସ୍ମାତ୍ କୁର୍ଯ୍ୟାତ୍ ଗୃହାରମ୍ଭୋ ବଶୁଦ୍ଧୋଚନ୍ଦ୍ର ତାରକୌ

କୃଷ୍ଣ ପକ୍ଷରେ ତାରା (ନକ୍ଷତ୍ର) ବଳବନ୍ତ ଶୁକ୍ଳ ପକ୍ଷରେ ଚନ୍ଦ୍ର ବଳବାନ୍ । ଏଣୁ ଚନ୍ଦ୍ରଶୁଦ୍ଧି ତାରାଶୁଦ୍ଧି ବିଚାର କରି ଗୃହାରମ୍ଭ କରିବ । ଇତ୍ୟର୍ଥ ।

## ମାସଫଳ ନିର୍ଣ୍ଣୟ

ବୈଶାଖ ଶ୍ରାବଣାଷାଢ଼ା ମାଘଫାଲ୍‌ଗୁନ କାର୍ତ୍ତିକାଃ
ଗୃହାରମ୍ଭେ ପ୍ରଶସ୍ତାଚ ପୁତ୍ର ପତ୍ନୀ ବିବର୍ଦ୍ଧକାଃ

ବୈଶାଖ ଶ୍ରାବଣ ଆଷାଢ଼ ମାଘ ଫାଲଗୁନ ଓ କାର୍ତ୍ତିକ ମାସରେ ଗୃହାରମ୍ଭ ପ୍ରଶସ୍ତ ଅଟେ । କିନ୍ତୁ ଆଷାଢ଼ ଶ୍ରାବଣ ଓ କାର୍ତ୍ତିକ ମାସରେ ହରିଶୟନ ବିଚାର କରି ଗୃହାରମ୍ଭ କରିବ । ହରି ଶୟନରେ ଗୃହାରମ୍ଭ କରିବ ନାହିଁ ।

ଆଷାଢ଼ାଶ୍ୱିନ ଚୈତ୍ର କାର୍ତ୍ତିକେଷୁ ଜ୍ୟେଷ୍ଠେଃପିତପୌଷ୍ଣପଦେଦିତମାଘେ
ନିକେତନାନାଂ ତଟନେତ ସଙ୍କ୍ରୋତଯୋଗେଶ୍ୱର୍ଯ୍ୟମତେନଶସ୍ତ ।

ଆଷାଢ଼ ଆଶ୍ୱିନ ଚୈତ୍ର କାର୍ତ୍ତିକ ଜ୍ୟେଷ୍ଠ ଭାଦ୍ର ଓ ମାଘ ଏ ମାସମାନଙ୍କରେ ଯୋଗେଶ୍ୱରାର୍ଯ୍ୟଙ୍କ ମତରେ ରାଜାମାନେ ଗୃହ ନିର୍ମାଣ କରନ୍ତୁ ।

ବୈଶାଖେ ଧନ ରତ୍ନାନି ଜ୍ୟେଷ୍ଠ ମୃତ୍ୟୁସ୍ତଥୈବଚ
ଆଷାଢ଼େ ଧନ ଲଭନ୍ତେ ପଶୁବୃଦ୍ଧି ମବାପ୍ନୁୟାତ୍
ଶ୍ରାବଣେ ଭୂମିଲାଭସ୍ୟାଦ୍ଧାନି ଭାଦ୍ରପଦେସ୍ତଥା
ପତ୍ନୀନାଶଶ୍ଚାଶ୍ୱିନେଚ ଭାର୍ଯ୍ୟାଲଭଂଚ କାର୍ତ୍ତିକେ
ମାର୍ଗଶୀର୍ଷେ ଧନାବାପ୍ତି ପୌଷେ ଚୌର ଭୟଂତଥା ।
ଅଶୁଭଂ ଚ ଭୟଂ ବଦ୍ୟାଦଗ୍ନି ର୍ମାଘେ ବିନର୍ଦ୍ଦିଶେତ୍
ଫାଲ୍‌ଗୁନେ କାଞ୍ଚନଂ ପ୍ରାପ୍ତିଂ ଚୈତ୍ରେ ପୁତ୍ରଶୋକଂଭବେତ୍

ବୈଶାଖରେ ଶୁଭ ଦେଲେ ଧନ ରତ୍ନ ପ୍ରାପ୍ତ ହୁଏ । ଜ୍ୟେଷ୍ଠେ ମୃତ୍ୟୁବତ୍ ଫଳ ହୁଏ । ଆଷାଢ଼ରେ ଧନଲାଭ ଓ ପଶୁବୃଦ୍ଧି କରାଏ ଶ୍ରାବଣରେ ଭୂମି ଲାଭ ହୁଏ । ଭାଦ୍ରରେ ଧନହାନି ଆଶ୍ୱିନରେ ସ୍ତ୍ରୀ ବିନାଶ କରାଏ । କାର୍ତ୍ତିକରେ ସ୍ତ୍ରୀ ଲାଭ ମାର୍ଗଶିରରେ ଧନପ୍ରାପ୍ତି ପୌଷରେ ଚୌରଭୟ ମାଘରେ ଅଗ୍ନିଭୟ ଫାଲଗୁନରେ ସୁବର୍ଣ୍ଣ ପ୍ରାପ୍ତି ଏବଂ ଚୈତ୍ରମାସରେ ଶୁଭ ଦେଲେ ପୁତ୍ରାଦି କଳତ୍ର ପକ୍ଷେ ଶୋକ ଜନ୍ମାଏ ।

## ନାରାୟଣ ଲଗ୍ନ ନିର୍ଣ୍ଣୟ

ତିନି ଚଉବନ ଝାସମେଷା, ଗୁରଚୈଇଶ କୁମ୍ଭା ବୃଷା ପାଞ୍ଚ ଆଠ ମକର ମିଥୁନ ପାଞ୍ଚ ଅଠାବିଶ କର୍କଡ଼ା ଧନୁ ପାଞ୍ଚ ପଚିଶ ସିଂହ ଅଳି ପାଞ୍ଚବାଇଶ କନ୍ୟା ତୋଳି ।

(ଅନ୍ୟଚ) ଏତିମାଦ୍ୱିବାଣେ ଜ ବେଦଶ୍ଚ ପୁଟଗ୍ନୌ
ର୍ବାମ...ଶଂଷ୍ଟଭୋ ପଞ୍ଚ ଗଜାନଦୀ ଚ...
ପଞ୍ଚେଷୁରାପି ...ଷ...ପୂର୍ଣ୍ଣ ... ଟ୍ରୌ
...ତ୍ ...ମା ନ୍ ...ଷ ... ମାନାଂ
ମେଷ ଦ...୪୪ ବୃଷ ଦ...୨୩ ମିଥୁନ ଦ... କର୍କଟ ...

ସିଂହ ଦ ୫।୩୪ କନ୍ୟା ଦ ୫।୨୨ ତୁଳା ଦ୫।୨୨ ବୃଶ୍ଚି ଦ ୫।୩୫ ଧନୁ ଦ ୫।୩୮ ମକର ଦ ୫।୮ କୁମ୍ଭ ଦ୪।୨୩ ମୀନ ଦ ୩।୫୪ ମୋଟ ଦିନମାନ ଦ ୬୦ ।

ଯଦାମାସସ୍ତଦାଲଗ୍ନଂ ତଲ୍ଲଗ୍ନେ ଚ ଉଦେରବୌ
ତତ୍ ସପ୍ତମଲଗ୍ନେଣ ମସ୍ତଲଗ୍ନଂ ତଦୁଚ୍ୟତେ ।

ରବି ଯେଉଁ ରାଶିରେ ଥାଏ ଅର୍ଥାତ୍ ମେଷାଦି କରି ଯେଉଁମାସ ହୋଇଥିବ ସେହି ଲଗ୍ନ ଉଦୟଲଗ୍ନ ହେବ ଓ ତାହାର ସପ୍ତମଲଗ୍ନରେ ରବି ଅସ୍ତ ହେବେ । ଦୃଷ୍ଟାନ୍ତ ସ୍ୱରୂପ ମେଷ ମାସରେ ରବି ଉଦୟ ହୋଇ ତୁଳା ଲଗ୍ନରେ ଅସ୍ତ ହୁଅନ୍ତି ।

## ଲଗ୍ନ ସାଧନ

ଲଗ୍ନ ଦଣ୍ଡଂ ଷଷ୍ଟୀଗୁଣିତଂ କଳ୍ପିକାଂ ତଦଯୋଜୟେତ୍
ରବ୍ୟଂଶେ ଗୁଣିତଂ ପିଣ୍ଡଂ ତିଂଶଦ୍ଭରେଣ ହାରୟେତ୍ ।

ମାସାନୁସାରେ ଉଦୟ ଲଗ୍ନକୁ ଷାଠିଏ ଗୁଣି କଳା ମିଶାଇ ତହିଁରେ ଆଣିବା ଦିନର ରବ୍ୟଂଶ ଗୁଣିବ, ପିଣ୍ଡ ଯାହାହେବ ତାହାକୁ ତିରିଶ ଭାଗ କରିବ, ଭାଗଫଳ ଯେତେ କଳାହେବ ଦଣ୍ଡକଳା ପ୍ରମାଣେ ସେତିକ ଲଗ୍ନମାନରୁ ଭୋଗ ହୋଇଅଛି ଜାଣିବ । ଲଗ୍ନମାନରୁ ତାହା ଫେଡ଼ି ଅବଶେଷ ସହିତ ଅନ୍ୟାନ୍ୟ ଲଗ୍ନମାନ ମିଶାଇ ଧାର୍ଯ୍ୟ ସମୟରେ ଲଗ୍ନ ସ୍ଥିର କରିବ ।

## ନବାଂଶ ସାଧନ

ଗୃହକ୍ଷଣ ଗୁଣିତଂ ବେଦଂ ୪ ଗ୍ରହ ୯ ଭାଗେଣ ହାରୟେତ୍
ଶେଷଅଂଶଂ ବିଜାନୀୟାଦ୍ ନବାଂଶ ପରିକୀର୍ତ୍ତୟେତ୍ ।

ଗୃହ ନକ୍ଷତ୍ରକୁ ବେଦ ବୋଲନ୍ତେ ୪ରେ ଗୁଣିବ ୯ରେ ହରିଲେ ଶେଷ ଅଙ୍କ ଯାହା ରହିବ ତାହା ଗୃହର ଗ୍ରହ ହୁଏ, ତାକୁ ନବାଂଶ କହନ୍ତି ।

## ନବାଂଶ ଗ୍ରହଫଳ

ଆଦୌ ଚୌର ଦ୍ୱୟଂ ଭୋଗୀ ତୃତୀୟେ ବିତ୍ତନାଶନଂ
ବେଦଅଂଶେ ଭବେଦ୍ଧାତା ପଞ୍ଚମେ ନୃପତିସ୍ତଥା ।
ଷଷ୍ଠେ ଅଭୟମାପ୍ନୋତି ସପ୍ତମେ ଚ ନପୁଂସକଂ
ବସୌ ଦରିଦ୍ରମାପ୍ନୋତି ନବମେଚ ନବଂଶକମ୍ ।

୧ ରହିଲେ ରବିଗ୍ରହ ଚୌରଭୟ ହୁଏ ୨ ରହିଲେ ଚନ୍ଦ୍ରଗ୍ରହ ଭୋଗ ବିଳାସରେ ଦିନ ନିଏ ୩ ରହିଲେ ମଙ୍ଗଳ ଗ୍ରହ ବିତ୍ତ ନାଶ ହୁଏ ୪ ରହିଲେ ବୁଧଗ୍ରହ ଗୃହସ୍ୱାମୀ ଦାତା ହୁଅଇ ୫ରେ ବୃହସ୍ପତି ଗ୍ରହ ରାଜସମ୍ମାନ ପ୍ରାପ୍ତ ହୁଏ ୬ ଶୁକ୍ରଗ୍ରହ ଭୟଜାତ କରାଏ ୭ ଶନି ଗ୍ରହ ନପୁଂସକ କରାଏ ୮ ରାହୁଗ୍ରହ ହେଲେ ଦରିଦ୍ର ହୁଏ ୯ କେତୁ ଗ୍ରହ ବଂଶ ହାନି କରାଏ ।

## ଗୃହର ଆୟୁଭାଗ ନିର୍ଣ୍ଣୟ

ଗୃହଆୟୁ ଯତୋବର୍ଷଂ ଦ୍ୱାଦଶାଂଷେ ବିଭାଜୟେତ୍ ।
ଶେଷମଂଶ ଯଥାପ୍ରୋକ୍ତା ଆୟୁର୍ଜ୍ଞେୟଂ ଯଥୋତ୍ତରମ୍ ।

ଗୃହର ପରମାୟୁ ଯେତେବର୍ଷ ପଡ଼ିଥିବ ତାହାକୁ ବାର ୧୨ ଦ୍ୱାରା ଭାଗ କରିବ ଲବ୍‌ଧଫଳରେ କାର୍ଯ୍ୟନାହିଁ ଭାଗଶେଷ ଯାହା ରହିବ ତାହା ଗୃହର ଆୟୁ ବୋଲି ଜାଣିବ ।

## ଗୃହର ବ୍ୟୟଭାଗ ନିର୍ଣ୍ଣୟ

ଅଷ୍ଟାଭର୍ଜ୍ଜିତା ଦୃକ୍ଷାତ୍‌ଯନ୍ ଶେଷଂ ତତ୍ ବ୍ୟୟୋଭବେତ୍
ବ୍ୟୟାଧିକଂ ନ କର୍ତ୍ତବ୍ୟଂ ଗୃହେଗୃ ଶୁଭମେବଚ ।

ଗୃହର ନକ୍ଷତ୍ର ସଂଖ୍ୟା ଯାହା ହୋଇଥିବ ତାକୁ ଆଠ ୮ ଦ୍ୱାରା ହରିଲେ ଯାହା ଅବଶେଷ ରହିବ ତାହା ଗୃହ କର୍ତ୍ତାର ବ୍ୟୟବୋଲି ଜାଣିବ । ଆୟୁ ଅଳ୍ପ ବ୍ୟୟ ଅଧିକ ହେଲେ ସେ ବାସ୍ତୁକୁ ତ୍ୟାଗ କରିବ ।

ଏବମେବାୟୁର୍ଦ୍ଦ୍ଧଂଶଂଗୃହେ ଦ୍ୱିଗୁଣା ଚେଦ୍ଧିକା ସ୍ମୃତା
ଶୀଳାଚ୍ଛୁଗୁଣାପ୍ରୋକ୍ତା ତୈବଂ ଜ୍ଞେୟଂ ଯଥାଯଥମ୍ ।।

ତୃଣ ଗୃହର ପରମାୟୁ ଏକଗୁଣ, ଇଷ୍ଟା ଗୃହର ପରମାୟୁ ଦୁଇଗୁଣ ଏବଂ ପଥର ନିର୍ମିତ ଗୃହର ପରମାୟୁ ତୃତଗୁଣ ଅଟେ ।

## ଗୃହର ନାଗ ନିର୍ଣ୍ଣୟ

ଋକ୍ଷେଣାଂ ଗୁଣିତଂ ପିଣ୍ଡଂ ମଷ୍ଟଭିରଗେଣ ହାରଯେତ୍
ଅଷ୍ଟୌନାଗାନନନ୍ତାଦ୍ୟାନ୍ ଭାଗଶେଷଂ ପ୍ରକଲ୍ପଯେତ୍ ।

ଘରର ମୂଳପିଣ୍ଡକୁ ଘରର ନକ୍ଷତ୍ର ଦ୍ୱାରା ଗୁଣନ କରି ଆଠରେ ହରଣ କର, ଅବଶେଷ ଯାହା ରହିବ ତାହା ଅନନ୍ତାଦି ଅଷ୍ଟକୁଳ ନାଗ ହୁଅଇ ।

## ନାଗମାନଙ୍କ ନାମ

୧ ଅନନ୍ତ ୨ ବାସୁକୀ ୩ ତକ୍ଷକ ୪ କର୍କଟ ୫ ଶଙ୍ଖ ୬ କୁଳିକ ୭ ପଦ୍ମ ୮ ମହାପଦ୍ମ ।

## ନାଗ ପତ୍ନୀଙ୍କ ନାମ

୧ ପଦ୍ମା ୨ ଉତ୍ପଳା ୩ ସୁମେଧା ୪ ସୁପଥା ୫ ଦଧିପ୍ରିୟା ୬ ଶ୍ୱେତମୁଖୀ ୭ ସୁନେହା ୮ ସୁଗନ୍ଧମା ।

ପରମାୟୁତ ବର୍ଷାଣାଂ ପଞ୍ଚଭିରଗେଣ ହାରଯେତ୍
ଶେଷଅଂଶସ୍ଥିତୋ ଯତ୍ର ପଞ୍ଚଭୂତାଦିକଂ କ୍ରମାତ୍ ।

ଗୃହର ପରମାୟୁ ଯେତେବର୍ଷ ହୋଇଥିବ ତାହାକୁ ୫ ଦ୍ୱାରା ଭାଗ କରିଲେ ଶେଷ ଅଂଶ ଗୃହର ନାଶ ହୁଏ ଯଥା—୧ ପୃଥିବୀ ୨ ଆପ ୩ ତେଜ ୪ ବାୟୁ ୫ ଆକାଶ ଏହିପରି ନାଶ ହୁଏ ।

(ଉଦାହରଣ ୩୫ପୃଷ୍ଠାରେ ପ୍ରଦତ୍ତ ହୋଇଅଛି)

## ଅଷ୍ଟମ ପରିଚ୍ଛେଦ

### * ଇନ୍ଦ୍ରାଦି ଦିକ୍‌ପାଳ ପୂଜା ନିୟମ *

ଇନ୍ଦ୍ରାଽଗ୍ନି ଯମ ନୈର୍ଋତ ବରୁଣାଽନିଳ ଧନାଧିପ
ଶଙ୍କର ପଦ୍ମଯୋନିଷ୍ଟାନନ୍ତମାଂ ଦିଗଧିଶ୍ୱରାଃ

ପୂର୍ବଦିଗରେ ଦିଗାଧିପତି ଇନ୍ଦ୍ର ଅଟନ୍ତି । ସେହିପରି ଅଗ୍ନି କୋଣରେ ଅଗ୍ନି ଦକ୍ଷିଣ ଦିଗରେ ଯମ ନୈର୍ଋତ କୋଣରେ ନୈର୍ଋତ

ପଶ୍ଚିମ ଦିଗରେ ବରୁଣ ବାୟବ୍ୟ କୋଣରେ ପବନ ଉତ୍ତରଦିଗରେ କୁବେର ଐଶାନ୍ୟ କୋଣରେ ଶଙ୍କର ଦିଗାଧିପ ଏତଦ୍‌ବ୍ୟତୀତ ଊର୍ଦ୍ଧ୍ୱ ସ୍ଥାନରେ ବ୍ରହ୍ମା ଓ ଅଧଃସ୍ଥାନରେ ଅନନ୍ତ ଦିଗାଧିପ ଅଟନ୍ତି ଏହି ଦଶଦିଗ ପାଳଙ୍କୁ ନିମ୍ନୋକ୍ତ ନିୟମାନୁସାରେ ପୂଜାକରି ଗୃହାରମ୍ଭ କଲେ ଶୁଭ ଫଳ ପ୍ରାପ୍ତ ହୁଏ । କ୍ଷେତ୍ରପାଳ ଓ ମହାଲକ୍ଷ୍ମୀଙ୍କୁ ମଧ୍ୟ ଗୃହାରମ୍ଭ ବେଳେ ପୂଜା କରିବା ବିଧେୟ ଯଥା—

ଇନ୍ଦ୍ରାଦିଦିକ୍‌ପାଳାନ୍ ବାପି ପୂଜୟେଚ୍ଚ ଯଥାକ୍ରମମ୍
ମହାଲକ୍ଷ୍ମୀଂ ପୂଜୟିତ୍ୱା କ୍ଷେତ୍ରପାଳଂ ତଥୈବଚ ।

ଗୃହାରମ୍ଭ କାଳେ ଶୁଭ ଦେବା ସମୟରେ ଇନ୍ଦ୍ରାଦି ଦଶଦିଗ-ପାଳଙ୍କୁ ମହାଲକ୍ଷ୍ମୀ ଓ କ୍ଷେତ୍ରପାଳଙ୍କୁ ସର୍ବ ପ୍ରଥମେ ପୂଜାକରି ଗୃହାରମ୍ଭ କଲେ ଗୃହକର୍ତ୍ତାର ଚିରସୁଖରେ ଦିନ କଟାଇବାର ଶାସ୍ତ୍ରୋକ୍ତ ଅଛି ।

ଧୂପ ଦୀପଂ ନୈବେଦ୍ୟଂଚ ତଥାଚମନ ମେବଚ
ମୃତ୍ତିକା ମୁଷ୍ଟିକୋତ୍ତସ୍ତୋ ଗୃହ୍ରାଣଂଚ କରିଷ୍ୟଥ ।

ଉପରୋକ୍ତ ଦିଗପାଳ ଆଦିଙ୍କୁ ଧୂପ, ଦୀପ ଓ ନୈବେଦ୍ୟ ଦେଇ ଆଚମନ କରିବା ପରେ ତିନିମୁଠି ମୃତ୍ତିକା ଆଘ୍ରାଣ କରିବ ।

ଦ୍ୱାଦଶାଙ୍ଗୁଳିକଂ ତ୍ୟକ୍ତ୍ୱାବାସ୍ତୁସ୍ଥାନୋ ଶୁଦ୍ଧଂ ତତଃ
ପଞ୍ଚାମୃତେନ ସ୍ନାତବ୍ୟଂ ଦଦ୍ୟାତ୍ ବୈଶିଳ୍ପକାରକଃ ।

ବାସ୍ତୁସ୍ଥାନରୁ ଦ୍ୱାଦଶାଙ୍ଗୁଳ ଗ୍ରାଢ଼ ଶୁଭ ପଥର ପକେଇବ । ସେହି ପଥରଟିକୁ ପଞ୍ଚାମୃତରେ ସ୍ନାନ କରାଇଥିବ ଆଉ ମଧ୍ୟ ଗୃହକର୍ତ୍ତାର ସେହିଦିନ ତାରାଚନ୍ଦ୍ର ଶୁଦ୍ଧି ହୋଇଥିବ । ନିମ୍ନୋକ୍ତ ବିଧିରେ ପୂଜା କରିବ ।

ପୂର୍ଣ୍ଣକୁମ୍ଭଂ ସମାରୋପ୍ୟ ଚୂତପଲ୍ଲବ ସଂୟୁତଂ
ଗନ୍ଧପୁଷ୍ପାଦିନା ଲକ୍ଷ୍ମୀଃ ଶ୍ରୀସୁକ୍ତେନ ପ୍ରପୂଜୟେତ୍
ଅଷ୍ଟବସୁଚ ସଂପୂଜ୍ୟ ଷଟ୍ ମାତୃଶ୍ଚ ଯଥାକ୍ରମମ୍
ଅନନ୍ତଂ ବାସୁପୂରୁଷଂ ବ୍ରହ୍ମଂ ପୃଥ୍ୱୀଂ ଗ୍ରହାନ୍ନବାନ୍
ବାସୁକୀଂ ତକ୍ଷକଂ ଚୈବ କୁଳକଂ କର୍କଟଂ ତଥା ।

ପଦ୍ମଂଚ ଖଙ୍ଗଚୂଡ଼ଂ ଚ ମହାପଦ୍ମଂ ଧନଞ୍ଜୟଂ
ପୂଜୟେତ୍ ଗନ୍ଧମାଲ୍ୟାଦୈ୍ୟ ନାଗାନଷ୍ଟୌ ପ୍ରପୂଜ୍ୟଚ ।

ସର୍ବ ପ୍ରଥମେ ପୂର୍ଣ୍ଣକୁମ୍ଭ ଘଟସ୍ଥାପନ କରିବ । ଚନ୍ଦନ ପୁଷ୍ପାଦି ଗନ୍ଧମାଲ୍ୟ ଦେଇ ଲକ୍ଷ୍ମୀପୂଜା କରି ଇନ୍ଦ୍ରାଦି ଦଶଦିଗପାଳଙ୍କୁ ପ୍ରତ୍ୟେକ ଦିଗରେ ପୂଜା କରିବ, ଅଷ୍ଟବସୁଙ୍କୁ ମଧ୍ଯ ପୂଜିବ । ପୁନଃ ଷଡ଼ମାତୃକା ପୂଜା କରିବ ଓ ବାସ୍ତୁ ପୁରୁଷ ସହିତ ଧ୍ରୁବ ପୃଥିବୀ ସପ୍ତ ସମୁଦ୍ର ଓ ବାସୁକୀଙ୍କୁ ମଧ୍ଯ ପୂଜିବ । ନିମ୍ନୋକ୍ତ ମନ୍ତ୍ରପାଠ କରିବ ।

ଓଁ ଶ୍ରୀ ଗଣପତୟେ ନମଃ, ମୃତ୍ୟୁଞ୍ଜୟାୟ ନମଃ, ବାସୁଦେବାୟ ନମଃ
ଶ୍ୱେତବାସସେ ନମଃ ଯୋଗଗୃହସ୍ଥା ନମଃ
ଦିକ୍‌ପାଳେଭ୍ୟୋ ନମଃ, ଅଷ୍ଟକୁଳ ନାଗ ନାଗପତ୍ନୈ୍ୟ ନମଃ
ଦୁର୍ଗାୟୈ ନମଃ, ବିକଟାଳାୟ ନମଃ
ଭୀମସେନାୟ ନମଃ, ଭସ୍ମାନଳାୟ ନମଃ
ଯମଦଣ୍ଡାୟ ନମଃ, କାଳଜିହ୍ୱାୟୈ ନମଃ
ଶୋଷଣାୟ ନମଃ, ତାଡ଼ନାୟ ନମଃ

## ବସୁଧା ଦେବୈ୍ୟ ପ୍ରାର୍ଥନା

ଓଁ ବସୁଧେତ୍ୱଂ ହେମଗର୍ଭେ ଶେଷସ୍ୟା ପରିଶାୟିନୀ
ତବପୃଷ୍ଠେ ଚନ୍ଦନୀତି ଗୃହକାର୍ଯ୍ୟ ମିନ୍ଦିମେ
ଓ ସର୍ବଲକ୍ଷଣ ସମ୍ପୂର୍ଣ୍ଣ ସର୍ବଦେଶକ ମଠାଧିପେ
ସ୍ଥାନଂ ଦେହି ଗୃହକର୍ତ୍ତୃଂ ବସ୍ତୁ ରୂପେ ନମସ୍ତୁତେ ।

## ବସୁଧା ପୂଜା

ବସୁଧାୟୈ ନମଃ, ବସୁଧାମାବାହୟାମି ବସୁଧେ ଅମାଗଚ୍ଛ
ବସୁଧେ ଦେହିମେ ନିତ୍ୟଂ ଧନପୌତ୍ରଂ ବିବର୍ଦ୍ଧନେ
ସ୍ଥିରାଭବନ୍ତୁ ମେ ନିତ୍ୟ ଯାବଚ୍ଚନ୍ଦ୍ରାର୍କ ମେଦିନୀ ।

## ନାଗପୂଜା

ଅନନ୍ତାଦି ଅଷ୍ଟକୁଳାନାଗେଭ୍ୟୋ ନମଃ
ଅନନ୍ତାଦି ଅଷ୍ଟକୁଳାନାଗାନ୍ ଅବାଗଚ୍ଛ, ଅନନ୍ତାୟ ନମଃ

ବାସୁକୀନେନମଃ, ତକ୍ଷକାୟ ନମଃ, କର୍କଟାୟେ ନମଃ, ଶଙ୍ଖାୟେ ନମଃ, କୁଳିକାୟେ ନମଃ, ପଦ୍ମାୟେ ନମଃ, ମହାପଦ୍ମାୟେ ନମଃ ।

## —ନାଗ ପ୍ରାର୍ଥନା—

ଓଁ ହେମକୁନ୍ଦ ପ୍ରତିକାଶ ନାଗାନାନ୍ତନ୍ ମହାଫଣେ
ସ୍ଥାନଂଦେହୀ ଗୃହଂ କର୍ତ୍ତୁଂ ଗୃହକାର୍ଯ୍ୟେ ନମସ୍ତୁତେ

## —ସାବର୍ଣ୍ଣୀ ପ୍ରାର୍ଥନା—

ସାବର୍ଣ୍ଣୀ ଲୋକ ମାତାମା ସତ୍ୟବ୍ରତ ପ୍ରଦାୟିନୀ
ସର୍ବସୁଖମୟୀଦେବୀ ସତ୍ୟଦେବୀ ନମୋନମଃ

ମଙ୍ଗଳାଷ୍ଟକଂ

ଅବିରଳ ମଦଧାର ଧୌତ କୁମ୍ଭା ଶରଣ୍ୟଂ
ଫଣୀବର ବୃତଗାତ୍ରଂ ସିଦ୍ଧ ସାଧ୍ୟାଦିବନ୍ଦ୍ୟଂ
ତ୍ରିଭୁବନଜନବିଘ୍ନଧ୍ୱାନ୍ତ ବିଧ୍ୱଂସଦକ୍ଷୋ
ବିତରତୁ ଗଜବକ୍ତ୍ରଂ ସନ୍ତତଂ ମଙ୍ଗଳଂବ

( ୨ )

ସିଦ୍ଧାନ୍ନଂ ଦଧିପାୟସଂ ସୁରୁଚିରଂ କୁମ୍ଭ ପ୍ରପୂର୍ଣ୍ଣାଜଳୈଃ
ଶଙ୍ଖୋବାଦ୍ୟରବଃ ସୁପୁଷ୍ପ ସହିତଂ ଗୋରୋଚନା ଶ୍ରୀଫଳଂ
ବିପ୍ରା ବେଦବିଦଃ ପ୍ରଭାତ ସମୟେ ଗୋକାଞ୍ଚନଂ ବ୍ରିହୟୋଃ
ଦୂର୍ବାଗ୍ରଂ ତିଳତଣ୍ଡୁଳଂ ପ୍ରତିଦିନଂ କୁର୍ବନ୍ତୁତେ ମଙ୍ଗଳଂ

( ୩ )

ସପ୍ତଦ୍ୱୀପ ପ୍ରଧାପଭୂମତ୍ତ ଧନକରଂ କାଶ୍ୟପି ବାଜବାହଂ
ପୁଣ୍ୟାସା ଚନ୍ଦ୍ରଭାଗା ଲବଣନଧିଗତା ମଙ୍ଗଳା ମଙ୍ଗଳେଶ
ରାମାଦେବୀ ପୂଜକତେଷୁ ପବନ ସୁତଯୁତା ଅମ୍ବିକା ରାମଚଣ୍ଡୀ
ବିଙ୍କେସ୍ୱା ଶୈତକର୍ମୀରବି ରଥସହିତାଂ କୁର୍ବନ୍ତୁତେ ମଙ୍ଗଳଂ

( ୪ )

ଧେନୁଃବତ୍ସା ପ୍ରଯୁକ୍ତା ବୃଷ ଗଜତୁରଗାନ୍ ଦକ୍ଷିଣାବର୍ତ୍ତ ବହ୍ନିଃ
ଦିବ୍ୟ ସ୍ତ୍ରୀ ପୂର୍ଣ୍ଣକୁମ୍ଭାଃ ଦ୍ୱିଜନୃପଗଣିକା ପୁଷ୍ପମାଳା ପତାକା

ସଦ୍ୟୋମସ୍ତ୍ରଂ ଘୃତୋବାଦର୍ଶମଧୁ ସନ୍ଧୃତଂ କାଞ୍ଚନଂ ଶୁକ୍ଳ ଧାନ୍ୟଂ
ଦୃଷ୍ଟ୍ୱା ସ୍ପୃଷ୍ଟ୍ୱା ପଠେଦ୍ବାଫଳମିହ ଲଭତେ ମାନବୋସିଦ୍ଧି କାମଃ

(୪)

ବାଲ୍ମୀକ ସନକ ସନାତନ ମୁନି ବ୍ୟାସୋ ବଶିଷ୍ଠୋ ଭୃଗୁଃ
ଜାବାଳ ଜମଦଗ୍ନି କୌଶିକ ଜନାଃଗ ର୍ଗ୍ୟାଙ୍ଗ ଗୌତମଂ
ମାନଧାତାଂ ଚ ନୃପ ସ୍ତଥୈବ ସଗରୋ ବେଣୁଦ୍ଵଲ୍ଲୀପୋନଳ
ରାମୋଧର୍ମସୁତୋ ଯଜାନ୍ତ ନୈକେଷଂ କୁର୍ବନ୍ତୁତେ ମଙ୍ଗଳଂ

## ଦେବତା ଗୃହମାନଙ୍କର ଦ୍ୱାରବନ୍ଧ ମାପ

ଷୋଡ଼ଶ ସପ୍ତକଂ ବଷ୍ଣୋଃ କୁର୍ଯ୍ୟାତ୍ ଲକ୍ଷ୍ମୀଗୃହଂତଥା
ବାଣା ରସା ରୁଦ୍ରଗେହଂ ନବବାଣାଃ ପ୍ରକୀର୍ତ୍ତିତାଃ
ଚଣ୍ଡିକାୟାଃ ସମଂ କୁର୍ଯ୍ୟାତ୍ ଗଣେଶ ସ୍ୟଥ ତ୍ରିକୂଟଂ
ଯୁଗ୍ମମେକଂ ବ୍ରହ୍ମଦ୍ୱାରଂ ଗଣୋସ୍ୟାତ୍ ରୁଦ୍ରପଞ୍ଚ ଚ
ହସ୍ତୁ ପକ୍ଷୀ କ୍ଷତ୍ରିୟସ୍ୟ ବୈଶ୍ୟସ୍ୟ ପଞ୍ଚକଂ ତ୍ରୀଣି

ବିଷ୍ଣୁ ମନ୍ଦିର ଦ୍ୱାରବନ୍ଧ ୧୬ ଭାଗର ଲମ୍ବ ୭ ଭାଗ ଓସାର ଲକ୍ଷ୍ମୀମନ୍ଦିରର ଦ୍ୱାରବନ୍ଧ ୬ ଭାଗ ଲମ୍ବ ୫ ଭାଗ ଓସାର । ଶିବ ମନ୍ଦିରରେ ଦ୍ୱାରବନ୍ଧ ୯ ଭାଗ ଲମ୍ବ ୫ ଭାଗ ଓସାର । ଚଣ୍ଡୀମନ୍ଦିରର ଦ୍ୱାରବନ୍ଧ ଦୀର୍ଘ ଓ ପ୍ରସ୍ତ ସମାନ ହେବ । ଗଣେଶମନ୍ଦିରର ଦ୍ୱାରବନ୍ଧ ୩ ଭାଗର ଲମ୍ବ ୧ ଭାଗ ଓସାର ବ୍ରାହ୍ମଣ ମନ୍ଦିରର ଦ୍ୱାରବନ୍ଧ ୨ଭାଗ ଲମ୍ବ ୧ ଭାଗ ଓସାର, ରାଜଗୃହର ଦ୍ୱାରବନ୍ଧ ଲମ୍ବ ୧୧ ଭାଗ ଓସାର ୫ ଭାଗ, ଶୂଦ୍ର ଗୃହର ଦ୍ୱାରବନ୍ଧ ୩ ଭାଗ ଲମ୍ବ ୨ ଭାଗ ଓସାର ବୈଶ୍ୟ ଗୃହର ଦ୍ୱାରବନ୍ଧ ୫ ଭାଗ ଲମ୍ବ ୩ ଭାଗ ଓସାର ।

ଚତୁରସ୍ରଂଚ କ ଷ୍ଟଂ ଚ କୃତ୍ୱୈକଂ ପଞ୍ଚାଧ ପୁନଃ
ମଧ୍ୟେ ଭାଗଦ୍ୱୟଂ ତ୍ୟକ୍ତ୍ୱା ପାର୍ଶ୍ୱଦ୍ୱୟେ ଚ ସ୍ଥାପୟେତ୍

ଗୋଟିଏ କାଷ୍ଠଖଣ୍ଡକୁ ୮ ପାଲକା କରିବାକୁ ହେଲେ ପ୍ରଥମେ ସେହି ଖଣ୍ଡକୁ ୪ ପାଲକା କରିବ, ତାପରେ ପାଲକା ଗୋଟିକୁ ୫ ଭାଗ କରିବ, ମଧ୍ୟରେ ଦୁଇଭାଗ ରଖି ଆଉ ଯେତେ ଦୁଇ ପାର୍ଶ୍ୱରେ ରଖିବ ।

## ଚତୁଷ୍କୋଣ ମାପ




ଦୀର୍ଘ ପ୍ରସ୍ଥ ସମେକୃତ୍ୱା ଦଶୋର୍ଦ୍ଧ୍ୱ ସପ୍ତକେନ ଚ
ଗୁଣିତ୍ୱା ହାରକଂ ଜ୍ଞେୟଂ ଦଶୋତ୍ତର ଦ୍ୱୟଂ ଚବୈ

ଗୋଟିଏ ଘରର କୋଣ-ମାପ ଆଣିବାକୁ ହେଲେ, ପ୍ରଥମେ ଦୀର୍ଘ ପ୍ରସ୍ଥ ସମାନ କରିବ । ଦୀର୍ଘ ବା ପ୍ରସ୍ଥକୁ ୧୭ରେ ଗୁଣି ୧୨ରେ ହରିଲେ କୋଣ ମାପ ଆସିବ ।

୩ × ୧୭ = ୫୧ ÷ ୧୨ = ୪$\frac{୧}{୪}$

**ଦ୍ୱାରବନ୍ଧ ବିଚାର ନିର୍ଣ୍ଣୟ**—ସୌର ଶ୍ରାବଣ ଫାଲଗୁନ ଭାଦ୍ର ଓ ମାଘ ମାସରେ ପୂର୍ବ ପଶ୍ଚିମ ମୁଖ ଗୃହ । କାର୍ତ୍ତିକ ବୈଶାଖ, ଜ୍ୟେଷ୍ଠ, ମାର୍ଗଶିରରେ ଦକ୍ଷିଣୋତ୍ତର ମୁଖ ଗୃହ କର୍ତ୍ତବ୍ୟ ଏ ବିଧିରେ ଅନ୍ୟଥା ଚରଣ ଦ୍ୱାରା ଗୃହସ୍ୱାମୀର ରୋଗ, ଶୋକ, ଧନହାନ ଆଦି ଦୁର୍ଯୋଗ ଘଟେ ।

(କ) ପୂର୍ଣ୍ଣିମାଠାରୁ କୃଷ୍ଣାଷ୍ଟମୀ ପର୍ଯ୍ୟନ୍ତ ପୂର୍ବଦ୍ୱାରୀ, କୃଷ୍ଣ ୯ମୀ-ଠାରୁ କୃଷ୍ଣ ୧୪ଶୀ ପର୍ଯ୍ୟନ୍ତ ଉତ୍ତରଦ୍ୱାରୀ ଅମାବାସ୍ୟାଠାରୁ ଶୁକ୍ଲାଷ୍ଟମୀ ପର୍ଯ୍ୟନ୍ତ ପଶ୍ଚିମଦ୍ୱାରୀ ଏବଂ ଶୁକ୍ଳ ୯ମୀଠାରୁ ଶୁକ୍ଳ ୧୪ଶୀ ପର୍ଯ୍ୟନ୍ତ ଦକ୍ଷିଣଦ୍ୱାରୀ ଗୃହ ଅଶୁଭ ।

ଗୋ-ଗୃହ ସର୍ବଦା ପୂର୍ବ ପଶ୍ଚିମ ଦ୍ୱାର କର୍ତ୍ତବ୍ୟ । ପଶୁବୃଦ୍ଧ୍ୟାକାଂକ୍ଷୀ ବ୍ୟକ୍ତି ଗୋଶାଳାନିର୍ମାଣରେ ଗଜ ଓ ସିଂହବନ୍ଧ ତ୍ୟାଗକରିବା ବିଧେୟ

କର୍କିକୁମ୍ଭ ହରନକ୍ରଗତେଽର୍କେ ପୂର୍ବ ପଶ୍ଚିମ ମୁଖା ନଗୃହାଣି ତୌଳି
ମେଷ ବୃଷ ବୃଶ୍ଚିକ ଗତେ ଦକ୍ଷିଣୋତ୍ତର ମୁଖାନ କୁର୍ଯ୍ୟାତ୍ ।
ଅନ୍ୟଥା ଯଦି କରୋତି ଦୁର୍ମିତ୍ତବ୍ୟାଧିଶୋକଧନହାନ ମଶ୍ନୁତେ
ମୀନଗୃପି ମିଥୁନାଙ୍ଗନାଗତେ କାରଯେନ୍ନ ଗୃହମେବ ଭାସ୍କରେ ।

ପୁନଃ—କର୍କେ କୁମ୍ଭେ ଚ ସିଂହେ ଚ ମକରେ ଚ ହିବାକର
ପୂର୍ବେ ବା ପଶ୍ଚିମେ ବାପି ଦ୍ୱାରଂ କୁର୍ଯ୍ୟାଚ୍ଚ ବେଶ୍ମନଃ ।
ମେଷ ବୃଷେ ବୃଶ୍ଚିକେ ଚ ତୁଲେ ଗୃପି ଯଦାରବିଃ
ଗୃହଦ୍ୱାରଂ ତଥା କୁର୍ଯ୍ୟାଦୁତ୍ତରଂ ବାପି ଦକ୍ଷିଣମ୍
(କ) ପୂର୍ଣ୍ଣିମାତୋଽଷ୍ଟମୀ ଯାବତ ପୂର୍ବାସ୍ୟବର୍ଜନେଦ ଗୃହଂ
ଉତ୍ତରାସ୍ୟଂ ନ କୁର୍ବୀତ ନବମ୍ୟାଦି ଚତୁର୍ଦ୍ଦଶୀଂ । ଅମାବାସ୍ୟା-
ଷ୍ଟମୀ ମଧ୍ୟେ ପଶ୍ଚିମାସ୍ୟାଂ ବିବର୍ଜୟେତ୍ । ନବମୀତଶ୍ଚ
ଯାମାସ୍ୟାଂ ଯାବଚ୍ଛୁକ୍ଲ ଚତୁର୍ଦ୍ଦଶୀମ୍ ।

ପୁନଃ—ପୂର୍ଣ୍ଣେନ୍ଦୁତଃ ପ୍ରାଗ କଦନଂ ନବମ୍ୟାଦିପୂତ୍ତରାସ୍ୟ
ଭୁଥ ପଶ୍ଚିମାସ୍ୟାଂ । ଦର୍ଶାଦିତଃ ଶୁକ୍ଲ ଦଳେ ନବମ୍ୟାଦୌ
ଦକ୍ଷିଣାସ୍ୟଂ ନ ଶୁଭଂ ବଦନ୍ତି ।

## ନବମ ପରିଚ୍ଛେଦ

### ବତ୍ତିଶ ଶଲ୍ୟର ନାମ

ଏକରେ ରୂପା ବୋଲକହି । ଦୁଇରେ ସୁନା ନାମ ହୋଇ ॥
ତିନରେ କାଂସ୍ୟ ଅଛି ଜାଣ । ଚତୁର୍ଥେ ତମ୍ବାର ପ୍ରମାଣ ॥ ପଞ୍ଚମେ
ସୀସା ଧାତୁ ଥାଇ । ଷଷ୍ଠରେ ରଙ୍ଗ ଯେ ବୋଲଇ ॥ ଧାତୁ ପିତ୍ତଳ
ସପତମେ । ଖର୍ପର ବଖାଣ ଅଷ୍ଟମେ ॥ ନବମେ ମୁଣ୍ଡ ମନୁଷ୍ୟର ।
ଦଶମେ ଇଟା ମୁନଗୀର ଏକାଦଶରେ ଖମ୍ବମୂଳ । ଦ୍ୱାଦଶେ ରଙ୍ଗ
ମାଟି ବୋଲ । ତେର ଅଙ୍କରେ ମିଳେ ବାଳ । ଶାମୁକା ଚତୁର୍ଦ୍ଦଶେ
ବୋଲ ପଞ୍ଚଦଶରେ ପ୍ରାପ୍ତି ଶଙ୍ଖ । ଷୋଡ଼ଶେ କାଚବୋଲି ଲେଖ ।
ସପ୍ତଦଶରେ ତୃଣ ମୂଳ । ଧାରଣା ଅଠରେ କେବଳ । ଊନବିଂଶରେ
ତେଲକୋଚ । ବିଂଶେଦେଉଳ ଚୂଳଖ୍ୟାତ ଶୃଗାଳ ଅସ୍ଥି ଏକବିଂଶେ

ହାଡ଼ ଗଜର ଯେ ଦ୍ୱାବିଂଶେ ॥ ତେଇଶେ ଲେଖ ଅଶ୍ୱହାଡ଼ ।
ଚବିଶେ ଅଶ୍ୱ ଅସ୍ଥି କୁଡ଼ ॥ ପଚିଶେ ଓଠ ଅସ୍ଥି ଥାଇ । ଛବିଶେ
କଉଡ଼ି ମିଳଇ ॥ ସତାଇଶରେ ଗୋରୁ ଅସ୍ଥି । ମହିଷଅସ୍ଥି ଅଠାଇଶି ।
ଊନତ୍ରିଂଶରେ ପଶୁଙ୍କର । ଅସ୍ଥିରେ ନ ଥାଇଟି ସ୍ଥିର ॥ ତିରିଶେ
ମିଳିବ ଅଙ୍ଗାର । ବାହାର କରି ଶୁଦ୍ଧ କର ॥ ଦେବତା ପ୍ରାପ୍ତି
ଏକତ୍ରିଂଶେ । ତପସ୍ୱୀ ଅସ୍ଥି ଯେ ବତିଶେ । ଏପରି ବତିଶ ଶଲ୍ୟର ।
ଉଦ୍ଧାର କରି ଶୁଦ୍ଧ କର ॥ ହେବଟି ସୁଖ ପରାପତ । ନ କଲେ
ନାଚିବେକ ଭୂତ ।

## ଶଲ୍ୟ ଉଦ୍ଧାର ନିୟମ

ଯେଉଁ ବାସ୍ତୁରେ କର ଘର । ତା ଦୀର୍ଘ ପ୍ରସ୍ଥକୁ ବିସ୍ତର ॥
ମିଶାନ୍ତ କରିବ ଅଙ୍ଗୁଳ । ଏକ ସ୍ଥାନରେ କରି ଠୁଳ ॥

ବସୁ ଅଙ୍କ କହି ଆଠକୁ । ତିନରେ ଗୁଣ ଯେ ତାହାକୁ ॥ ହାତ
ହରଣ ଯେହୁ ଶେଷ । ତାହା କରିଣ କର ଶେଷ । ହରନ୍ତେ ଶେଷ
ଯେ ରହିଲା । ତାହାକୁ ନବ ଭାଗ କଲା ॥ ଯେତେ ଅଛଇ ଗଣି
ନେଇ । ଅମୁକଠାରେ ଶଲ୍ୟ ଥାଇ ॥ ଐଶାନ୍ୟେ ବାମାବର୍ତ୍ତ ଜାଣ ।
ତଳ ଅଙ୍କ ଗଣିର ଗଣ ॥ ଆଠରେ ହରିଲାର ଅଂଶ । ପୂର୍ବଶଲ୍ୟାଙ୍କ
ଯେ ବତିଶ ॥ ଦୁହିଁଙ୍କି ଏକତ୍ରେ ମିଶାଇ । ତିନରେ ଗୁଣ ମନଦେଇ ॥
ବତିଶ୍ରୁଁ ତଳ ହେଲେ ଶଲ୍ୟ । ବତିଶ ଊର୍ଦ୍ଧ୍ୱ ନୋହେ ଭଲ ॥
ଏଥିରେ ହରଣ ମିଶାଣ କହିବା ପରୀକ୍ଷା ଦେଇଣ ॥ ଘରଗୋଟିକ
ଦୀର୍ଘ କର । ହାତକୁ ବିସ୍ତର ସତ୍ୱର ॥ ପ୍ରସ୍ଥକ ସାତ ହାତ କର ।
ଦୀର୍ଘ ପ୍ରସ୍ଥକ ଘନ କର ॥ ଗୁଣନ୍ତେ ଶଏ ଉଣେଇଶି । ବିସ୍ତର ମନେ
ସୁଚିନ୍ତେ ବସି ॥ ଅଷ୍ଟ ବନ୍ଧରେ ତାହା ହର । ଲବ୍ଧ ଯେ ପଡ଼ଇ
ଉପର ॥ ଲବ୍ଧରେ କାର୍ଯ୍ୟ ନାହିଁକିଛି । ଶେଷ ଯେ ସାତ ରହିଅଛି ॥
ଏହା ଉପରେ କରି ଜାଣ । ଏ ଶେଷ ବନ୍ଧ ପରିମାଣ ॥ ଏଥକୁ ପୁଣି
ଗୁଣି ତିନ । ହେଲା ଏ ଏକୋଇଶ ଜାଣି ॥ ଏଥକୁ ହରିଥୋଇ ଅଂଶ ।
ସାତ ଯେ କଲା ପରକାଶ । ଏଣେ ହରନ୍ତେ ଶେଷ ତିନ । ଜାଣିବ
ଏତେ ଭାଗ ଘେନ ॥ ଶଲ୍ୟ ତିନ ହାତ ଗର୍ଭରେ । ଜାଣ ଶେଷ ପୂର୍ବ

ଚିନରେ ॥ ଶେଷ ଯେ ରହେ ଅଙ୍କ ତିନ । ଏଥି ମିଶା ବତିଶ ଘେନ ॥
ବତିଶ ଯେ କେବଣ ଅଙ୍କ । ପୂର୍ବେକହିଲି ଯେ ଶଲ୍ୟାଙ୍କ ॥ ମିଶିହେଲା
ପଞ୍ଚତିରଶ । ପଣ୍ଡିତେ ନ ଘେନବ ଦୋଷ ॥ ଏଥକୁ ଗୁଣ ଘେନ
ତିନ । ହୋଇଲା ଶଏ ପାଞ୍ଚ ଜାଣି ॥ ଏହାକୁ ହର ବତିଶରେ ।
କାର୍ଯ୍ୟ ନାହିଁ ଲବ୍ଧ ଅଙ୍କରେ ॥ ନବଶେଷ ଅଙ୍କ ରହିଲା । ମନୁଷ୍ୟ
ମୁଣ୍ଡ ଏ ହୋଇଲା

## ଅନ୍ୟ ପ୍ରକାର ଶଲ୍ୟ ସାଧନ

ପଶ୍ଚିମ

ଉତ୍ତର (ବାମ) / ଦକ୍ଷିଣ (ଡାହାଣ)

| | | |
|---|---|---|
| ଶବର୍ଗ, ଗୋ ଶଲ୍ୟ<br>୩ ଗୃଖଣ୍ଡାରେ | ଅବର୍ଗ ନରଶଲ୍ୟ<br>୩ ହାତରେ | କବର୍ଗ ବୃଷଶଲ୍ୟ<br>୨ ହାତରେ |
| ପ ବର୍ଗ ବ୍ରହ୍ମଶଲ୍ୟ<br>କଟୀ ଗଖିରରେ | ହ, ଯ, ଲୁହା<br>ତୃଣ ଇତ୍ୟାଦି<br>୧ ହାତ ଗଖିରରେ | ଚ ବର୍ଗ ଶିଶୁଶଲ୍ୟ<br>କଟୀ ଗଖିରରେ |
| ପ କୁଣ୍ଡା<br>ଅଙ୍ଗାର<br>୨ ହାତରେ | ଛ ବଗ ଶିଶୁଶଲ୍ୟ<br>୩ ଗୃଖଣ୍ଡାରେ | ଟ ବର୍ଗ ଶ୍ୱାସଶଲ୍ୟ<br>୩ ଗୃଖଣ୍ଡାରେ |

ପୂର୍ବ

ଶିଳ୍ପକାରଂ ସମୁଦ୍ଦିଶ୍ୟ ଯଦାଚ ପ୍ରଶ୍ନ କାରକଃ
ପୃଚ୍ଛେତ୍ତଦ କ୍ଷରସ୍ୟାଦ୍ୟ ଦୁଚ୍ଚାରଣଂ ଚ ଯସ୍ନତେ
ବର୍ଗାନ୍କ୍ଷାଚ୍ଛା ତଦା ଦାସ୍ୟ ଶଲ୍ୟଂ ତଧ ବସ୍ତୁରସ୍ୟେତ୍ ।

ଶଲ୍ୟ ଥିବା ନ ଥିବା ସମ୍ବନ୍ଧରେ ପ୍ରଶ୍ନକର୍ତ୍ତା ଶିଳ୍ପକାରଙ୍କୁ ପଚାରିବା ବେଳେ ଯେବେ ଆଦ୍ୟାକ୍ଷର ଯେଉଁ ବର୍ଗ ମଧ୍ୟରେ ଥାଏ ଉପର କୋଠି ଅନୁସାରେ ବର୍ଗ ବିଚାର କରି ଶଲ୍ୟ ସ୍ଥିର କରିବ ।

ଅକାରାଦ୍ୟଷ୍ଟ ବର୍ଗାଂଚ ମଧ୍ୟବର୍ଗୌ ଯଥାକ୍ରମମ୍
ଲିଖିତା ଶଲ୍ୟ ପରୀକ୍ଷଂ ଚ କୁର୍ଯ୍ୟାତ୍ ଗେହଂ ପ୍ରଯତ୍ନତଃ

ଅ, କ, ଚ, ଟ, ତ, ପ, ଯ, ଶ, ଏହି ଆଠଗୋଟି ବର୍ଗକୁ ପୂର୍ବଦିଗରୁ ଆରମ୍ଭ କରି ଯଥାକ୍ରମରେ ଦକ୍ଷିଣାବର୍ତ୍ତଭାବେ ବସା-ଯାଇଅଛି ପ୍ରତି କୋଷ୍ଠୀ ମଧ୍ୟରେ ବର୍ଗ ଅନୁସାରେ ଶଲ୍ୟ ନିରୂପଣ କରାଯିବ । ପ୍ରଶ୍ନକାରକ ପ୍ରଥମ ଅକ୍ଷରରେ ବର୍ଗ ନିର୍ଣ୍ଣୟ କରି ସେହି ବର୍ଗ ମଧ୍ୟରେ ଲିଖିତ ଶଲ୍ୟର ନାମ ଜାଣିବ । ଶଲ୍ୟ ଉଦ୍ଧାର ନ କରି ଗୃହ ନିର୍ମାଣ କଲେ ଅମଙ୍ଗଳ ଘଟେ । ଏଣୁ ଶଲ୍ୟ ଉଦ୍ଧାର କରିବା ବିଧି ଅଟେ ।

ପ୍ରଶ୍ନକାଳେ ଅବର୍ଗଶ୍ଚେତ୍ ପୂର୍ବସ୍ୟାଂ ଦିଶି ସଂସ୍ଥିତଃ
ହିହସ୍ତାଧଗହ୍ୱରେଣ ନରଶଲ୍ୟଂଶୁଭଙ୍କରଃ ।

ପ୍ରଶ୍ନ କରିବା କାଳରେ ଯଦିଚ ଅ ବର୍ଗର ଉଚ୍ଚାରଣ ହୁଏ ତେବେ ପୂର୍ବଦିଗରେ ହିନହାତ ଗହ୍ୱରରେ ନର ଶଲ୍ୟ ଥିବାରୁ ଜାଣିବ । ଏହି ଶଲ୍ୟ ବହୁ କ୍ଷତିକାରକ ।

ପ୍ରଶ୍ନକାଳେ କ, ବର୍ଗଶ୍ଚୋବାଗ୍ନେୟ୍ୟେ ଅସ୍ଥି ସଂସ୍ଥିତଃ
ଦ୍ୱିହସ୍ତାଧଗହ୍ୱରେଚ ବୃଷଶଲ୍ୟଃ ସୁନିଶ୍ଚିତଃ ।

ପ୍ରଶ୍ନବେଳେ 'କ' ବର୍ଗ ଉଚାରଣ କଲେ ଦୁଇହାତ ଗହ୍ୱରରେ ଅଗ୍ନିକୋଣରେ ବୃଷ ଶଲ୍ୟ ଥିବାରୁ ଜଣାଯାଏ । ଏହି ଶଲ୍ୟକୁ ବାହାର ନ କରି ଗୃହ କଲେ ରାଜଭୟ ଘଟେ ।

ପ୍ରଶ୍ନକାଳେ ଚ ନଗଶ୍ଚେତ୍ କଟୀଭାଗ ସମେତଥା
ଅଧୋଦେଶେ ଶିଶୁଶଲ୍ୟଃ ଦକ୍ଷିଣଦିଶିସଂସ୍ଥିତଃ ।

ପ୍ରଶ୍ନ କରିବାବେଳେ ଚ, ବର୍ଗର ଉଚ୍ଚାରଣ କଲେ କଟିଗହ୍ୱର ଅର୍ଥାତ୍ ଦୁଇହାତ ଗହ୍ୱର ମଧ୍ୟରେ କୌଣସି ଶିଶୁ ଶଲ୍ୟ ଥିବାରୁ ଜଣାପଡ଼େ । ଏହି ଶଲ୍ୟ ଗୃହସ୍ଥପକ୍ଷେ ରୋଗକାରକ ।

ପ୍ରଶ୍ନକାଳେ ଟ ବର୍ଗଶ୍ଚେତ୍ ନୈର୍ଋତ ଦିଶିସଂସ୍ଥିତଃ
ସାର୍ଦ୍ଧହସ୍ତ ଗହ୍ୱରେଚ ଶ୍ୱାନ ଶଲ୍ୟ ସୁନଶ୍ଚିତଃ

ପ୍ରଶ୍ନ ସମୟରେ ଯଦିଚ ପ୍ରଶ୍ନକର୍ତ୍ତା ଟ, ବର୍ଗ ଉଚ୍ଚାରଣ କରନ୍ତି ତେବେ ନୈର୍ଋତ କୋଣରେ ଶ୍ୱାନଗୃହଖଣ୍ଡ ବା ଦେଢ଼ହାତ ଗହ୍ୱରରେ ଶ୍ୱାନ ଶଲ୍ୟ ବାହାରିବ, ଏ ଶଲ୍ୟ କ୍ଷତିକାରକ ।

ପ୍ରଶ୍ନକାଳେ ତ, ବର୍ଗଶ୍ଚେତ୍ ପଶ୍ଚିମସ୍ୟାଂ ଦିଶିସ୍ଥିତଃ
ବାଳକାସ୍ଥି ଭଜାମାସ୍ୟାଦ୍ ଗୃହସ୍ୱାମିଣୋ ମରଣ ଧ୍ରୁବଂ

ପ୍ରଶ୍ନ ସମୟରେ ଯଦିଚ ତ, ବର୍ଗର କୌଣସି ଅକ୍ଷର ଉଚ୍ଚାରଣ ହୁଏ ତେବେ ପଶ୍ଚିମ ଦିଗରେ କୌଣସି ବାଳକାର ଅସ୍ଥି ଦେଢ ହାତ ଗହ୍ୱରରେ ଥିବାର ଜାଣିପାରିବ, ଏହି ଶଲ୍ୟ ଗୃହସ୍ୱାମୀ ପକ୍ଷେ ମାରକ କାରକ ।

ପ୍ରଶ୍ନକାଳେ ପ, ବର୍ଗଶ୍ଚେତ୍‌ବ । ଯୁବେ ଶଲ୍ୟ ସଂସ୍ଥିତଃ
ଦ୍ୱିହସ୍ତାଧଃ ଗହ୍ୱରେଚ ମଙ୍ଗାର ଶଲ୍ୟ ଉଚ୍ୟତେ

ପ୍ରଶ୍ନ ସମୟରେ ପ୍ରଶ୍ନକର୍ତ୍ତା ପ, ବର୍ଗର କୌଣସି ଅକ୍ଷର ଉଚ୍ଚାରଣ କଲେ ଦୁଇହାତ ଗହ୍ୱରରେ ବାୟୁବ୍ୟ କୋଣରେ ଅଙ୍ଗାର ପୋଡା ହୋଇଥିବାର ଜାଣିବ । ଏହି ଅଙ୍ଗାର ଶଲ୍ୟ ରହିଲେ ଶତ୍ରୁ ବୃଦ୍ଧି ହୁଏ, ଆଉ ମଧ୍ୟ ଏହା ଦୁଃସ୍ୱପ୍ନକାରକ ।

ପ୍ରଶ୍ନକାଳେ ଯ, ବର୍ଗଶ୍ଚେଦୁତ୍ତରେସ୍ୟା ଦିଶିସ୍ଥିତଃ
କଟି ଭାଗ ସମଦେଶେ ବ୍ରହ୍ମ ଶଲ୍ୟ ସ ଉଚ୍ୟତେ

ଯଦିଚ ପ୍ରଶ୍ନକର୍ତ୍ତା ପ୍ରଶ୍ନକାଳେ ଯ, ବର୍ଗର ଉଚ୍ଚାରଣ କରନ୍ତି, ତେବେ ଉତ୍ତର ଦିଗରେ କଟୀଏ ଗର୍ଭରେ ବ୍ରହ୍ମ ଅସ୍ଥି ଥିବାର ଜାଣି ପାରିବ । ଏହି ଶଲ୍ୟ ରହିଲେ ଧନ କ୍ଷୟ କରାଏ ।

ପ୍ରଶ୍ନକାଳେ ଶ ବର୍ଗଶ୍ଚେଦୈଶାନ୍ୟେ ଦିଶିସଂସ୍ଥିତଃ
ସାର୍ଦ୍ଧହସ୍ତ ଗହ୍ୱରେ ଚ ଗୋ ଶଲ୍ୟଃ ସ ସୁନଶ୍ଚିତଃ ।

ପ୍ରଶ୍ନକର୍ତ୍ତା ପ୍ରଶ୍ନ ସମୟରେ ଶ ବର୍ଗ ଯଦିଚ ଉଚ୍ଚାରଣ କରନ୍ତି ତେବେ ଐଶାନ୍ୟ କୋଣରେ ଦେଢ଼ହାତଗହ୍ୱରରେ ଗୋରୁଅସ୍ଥି ଅଛି

ବୋଲି ଜାଣି ପାରିବ । ଏ ଶଲ୍ୟ ରହିଲେ ଗବାଦି ପଶୁମାନେ ବିନାଶ ହୁଅନ୍ତି ।

ହ—ପ ବର୍ଗୌ ଯଦିସ୍ୟାତାଂ ପ୍ରଶ୍ନକାଲେ ଯଥାକ୍ରମମ୍
ଲୌହ ତୃଣାଦିକଂଙ୍କ୍ଷେୟଂ ନ କୁର୍ଯ୍ୟାତ୍ତସ୍ୟ ସଂଶୟଃ ।

ପ୍ରଶ୍ନ ସମୟରେ ହ ବର୍ଣ୍ଣ କିମ୍ବା ପ ବର୍ଣ୍ଣର ଉଚ୍ଚାରଣ ଯଦିତ ହୁଅଇ ତେବେ ତୃଣ ଲୌହ କିମ୍ବା ଅସଂସ୍କାର ଦ୍ରବ୍ୟ ଅଛି ବୋଲି ଜାଣି ପାରିବ । ଏହି ଶଲ୍ୟଦ୍ୱାରା ସଞ୍ଚିତ ଦ୍ରବ୍ୟ ବିନଷ୍ଟ ହୁଏ ।

## ଦଶମ ପରିଚ୍ଛେଦ

## ରଥଦ୍ୱାର ନିରୂପଣ

ବସୁଭାଗଂ ଗୃହ୍ୟଭୂମି ଦ୍ୱିଭାଗଂ ଦ୍ୱୟ ମାଙ୍ଗୁଳଂ
ପକ୍ଷେ ଚ ବହ୍ନିଭାଗଂ ସ୍ୟାତ୍ ବେଦାଙ୍ଗୁଳା ସ୍ତଥୈବଚ

ପ୍ରଥମରେ ଭୂମି । ଭାଗ କରିବ । ଅଞ୍ଚଳା ଦୁଇ ଭାଗ ଦୁଇ ଆଙ୍ଗୁଳ । ବଡ଼ ପାଖୁଡ଼ା ତିନି ଭାଗ ଚଉକେ, ସାନ ପାଖୁଡ଼ା ତିନି ଭାଗକୁ ଚଉଠେ ଜାଣ ।

ତିଥ୍ୟାଙ୍ଗୁଳଂ ମହାସ୍ତାକ୍ଷଣଂ ଚ୍ଛେଦନଂ ଚ ତଥୈବଚ
ଦ୍ୱାଦଶେନାଙ୍ଗୁଳୈ ଶ୍ଚୈବ ସ୍ତାକ୍ଷଣଂଚ ସମ୍ପ୍ରପାଦକଂ ।

ଭୂମି ଗୋଜ ୧୫ ଆଙ୍ଗୁଳ, ଛୁଡ଼ାଣ ୧୨ ଆଙ୍ଗୁଳ ବଡ଼ଗୋଜ ସାତ ପା ରହିବ ।

ସପ୍ତଭାଗସ୍ତଥା ଭୂମିନ୍ ଶୃଙ୍ଖଳା ଚ ଦ୍ୱିଭାଗିକା
ମଧ୍ୟପକ୍ଷେ ଭବେଦେବ ବହ୍ନ୍ୟଷ୍ଟାଙ୍ଗୁଳକାସ୍ତଥା

ଦ୍ୱିତୀୟ ଭୂମି ୭ ଭାଗ କଲାପରେ ଅଞ୍ଚଳା ୨ ଭାଗ ଚଉକେ ରଖିବ ବଡ ପାଖୁଡ଼ା ୩ ଭାଗ ୨ ଚଉକ ।

କନିଷ୍ଠ ପକ୍ଷେଚ ତିଥେ ଙ୍ଗୁଳଂ ଭୂମି ସ୍ତାକ୍ଷଣକେ
ପୋଟଣଂ ଚ ଜସ୍ୟାଂ ଚେବ ଦ୍ୱିତୀୟ ଭୂମି ଭାଗକେ

ସାନ ପାଖୁଡ଼ା ୩ ଭାଗ ଭୂମି ଗୋଜ ୧୫ ଆଙ୍ଗୁଳ ଛୁଡ଼ାଣ ୧୨ ଆଙ୍ଗୁଳ ପୋଟଣ ଗୋଜ ତିନି ହାତ ତିନି ପା ଦ୍ୱିତୀୟ ଭୂମିରେ ପୋଟଳା ଭିଆ ପକାଇବ ।

ସପ୍ତଦ୍ୱାଦଶାଙ୍ଗୁଳେ ନେବ ଦ୍ୱାଦଶାଙ୍ଗୁଳକଂ ତଥା
ହଂସପାତ୍ରଂ କନିଷ୍ଠେଚ ଜ୍ୟେଷ୍ଠ ଶ୍ରେଷ୍ଠେ ଚ ସପ୍ତପାତ୍ର ।

ଭୂମି ଗୋଜ ୧୩ ଆଙ୍ଗୁଳ, ଛୁଡ଼ାଣ ୧୨ ଆଙ୍ଗୁଳ, ହଂସପାତ୍ର ସାନ ପାଖୁଡ଼ାରେ ମାରିବ । ବଡ଼ ଗୋଜ ସାତ ପା ରଖିବ ।

ପୋଠଲସ୍ୟ କମସ୍ତ୍ର ବଂଶତ୍ରିଷ୍ଠାଥ ଗୃଙ୍ଗୁଳାଃ
ନେବାଙ୍ଗୁଳା ଶ୍ରେଦନସ୍ୟ ଗୈର୍ଦ୍ଧ୍ୱଂ ଗୃପି ତଥୈବଚ ।
ନେବାଙ୍ଗୁଳା ଶ୍ରେଦନସ୍ୟ ଗୈର୍ଦ୍ଧ୍ୱଂ ଗୃପି ତଥୈବଚ ।

ପୋଠଲ ବଡ଼ ଗ୍ରସ୍ୱ ହାତେ ୪ ଆଙ୍ଗୁଳ, ଠେକ ଛୁଡ଼ାଣ ୨ ଆଙ୍ଗୁଳ ରଖିବ ।

ପୋଠଲଂ ପଞ୍ଚ ପଞ୍ଚଭି ସ୍ୱଙ୍ଗୁଳୈରଞ୍ଜଳା ତଥା
ଷଡ଼ାଙ୍ଗୁଳ ଭବେଦେବ ଭଗାର୍ଦ୍ଧାର୍ଦ୍ଧଂ ଦ୍ୱୟଂ ତଥା ।

ପୋଠଲ ଭୂମି ୫ ହାତ ଆଙ୍ଗୁଳ କରିହେବ ତାପରେ ଅଞ୍ଜଳ ଦୁଇ ତଉଠ ୬ ଆଙ୍ଗୁଳ ରଖିବ ।

ଗ୍ରମାଙ୍ଗୁଳା ସ୍ତଥା ସପ୍ତପଙ୍କେ ଚ ଖୋପକଂ
ତବଶ୍ରେଷ୍ଠାଙ୍ଗୁଳା ମୁଷ୍ଟାଗ୍ରେର୍ଦ୍ଧେ ଚ ଛେଦନଂ ତଥା
ପ୍ରତି ଛୁଡ଼ାଣ ୩ ଆ ଠେକ ୮, । ଆଙ୍ଗୁଳ
ଊର୍ଦ୍ଧ୍ୱଷଟ୍କେ ଭବେତ୍ର ମୁଷ୍ଟ ଚ୍ଛେଦନଂଚ ତଥୈବଚ
ଏବଂ ବଧି ବଧାନେନ କର୍ତ୍ତବ୍ୟଂ ଚ ପ୍ରଯତ୍ନତଃ
ଉପର ଛଅ ପଠ ତଉକେ, ଛୁଡ଼ାଣ ତଉକେ ।
ମୁଖାଣ୍ଡସ୍ୟ ଭବେଦକ୍ଷଂ ହସ୍ତେନାପି ଚତୁର୍ଦ୍ଦଶଂ
ମୁଖାଣ୍ଡଂ ଦ୍ୱାଦଶଂ ଚୈବ ଅଷ୍ଟବିଂଶଂ ଯଥାକ୍ରମଂ ।

ମୁହାଣ୍ଡ ୧୨ ହାତ ମୁହାଣ୍ଡ ୧୪ ହାତ ଆଉ ଦୁଇ ଅଖ ୧୮ ହାତ । ୨୨ ହାତରେ ୪ ଅଖ କରିବ ।

ଦ୍ୱାଦଶେନାଙ୍ଗୁଳୈରେବଂ ହସ୍ତ ଷଟ୍କଂ ନଳଂ କୁରୁ
ନଳେଚ ଗଭମେକଂ ବୈ ଚତୁର୍ଦ୍ଧ ଗେଷ୍ଟୁ କୋଠଣଂ

ନଳ ୬ ହାତ ୧୨ ଆଙ୍ଗୁଳ କରିଥିବା ପରେ ନଳରେ ଏକ ଗର୍ଭ ରହିବ । ଏହାକୁ ୪ ଭାଗରେବିବନ୍ଧ ଚଣ୍ଡା ଦେବ ।

ତନ୍ନେଷଡ଼ାଙ୍ଗୁ ଳାଣ୍ଣୈବ କୁଟ୍ଟିକା ଦ୍ୱାଦଶ ତଥା
ଜଳଖରେଣ ନୃପତ୍ତ ସ୍ତ୍ରଷ୍ଣଂଚ ଦ୍ୱସ୍ତ ମଷ୍ଟକଂ

ତକ ଉପରେ ଅଧିକ ୬ ଆଙ୍ଗୁଳ ଦେବ ୪ କୋଣରେ ୧୨ କୁଡ଼ୁକା ଜଳଜଉଆ ଗୋଜ ଖଣ୍ଡରେ ୧୬ ଗୋଟି ଦେବ ।

ଉଂଦରଂ ଯନ ଖଷ୍ଣଂଚ ପୂର୍ଯଂଧିକ୍ୟଂଚ ମୂଷ୍ଟିକଂ
ପୁର ଏର ଚ କର୍ତ୍ତବ୍ୟ ବଧିବତ୍ ତକକାରସ୍ୟେତ୍ ।

ଗର୍ଭଗୋଜ ପୁରକେ ତଉନକ ଲେଖାଁରେ ମାରବ ତଳ ପାଡୁଣିକୁ ଉପର ପାଡୁଣି ଖୁଣ୍ଟା ଦେଇ ବନ୍ଧିବ ।

ସପ୍ତ ହସ୍ତା ଭବେ ଦେବ ନାୟକ ଜଙ୍ଘା ଏବଚ
ହସ୍ତଷଟ୍କଂ ଭବେତ୍ ସ୍ୱକ ମୁଢେଣ ନବ ହସ୍ତକଂ ।

ନାୟିକା ଜଆ ୭ହାତ ଶୁଣ୍ଡଣ୍ଡେ ହେବ ନାୟିକା ବନ୍ଧା ସରକ ୬ ହାତ, ନାୟିକା ଉଚ୍ଚ ସାଲ ଗୁଡ ୯ ହାତ ହେବାକୁ ହେବ ।

ଉଚ୍ଚ ସିଂହାସନସ୍ୟାପି ଷୋଡ଼ଶ ଶୃଙ୍ଗୁ ଳା ସ୍ତଥା
ତନ୍ମଧ୍ୟେ ରତ୍ନସିଂହେଚ ଦ୍ୱାଦଶାଙ୍ଗୁ ଳମୁଚ୍ଚ୍ରୟଂ ।

ସିଂହାସନ ଉଚ୍ଚ ୧୬ ଆଙ୍ଗୁଳ ଶେଣି ୧୧ ଗୋଟି ରତ୍ନ ସିଂହାସନ ଉଚ୍ଚ ୧୨ ଆଙ୍ଗୁଳ ।

ପାଳକେ ସପ୍ତ ଭାଗାଞ୍ଚ ବଣାମଂ ତକ ନକ୍ଷିପେତ୍
ନାୟକେ ଛନ୍ଦମାଦେପ୍ୟ ଝମକେ ଖମ୍ଭସ୍ତା ତଥା ।

ପାଳକା ୭ ପା ରଖିବ ଆଉଜାଣି ବଡ଼ ଏ ଥାନ ପାଖୁଡ଼ରେ ମାରବ, ବଡ଼ ନାୟିକକୁ ଆଉଜାଣି ବାଉକୁ ଛନ୍ଦା ମାରବ । ଆଉଜାଣି ବଡ଼ ଖମ୍ଭ ୪ ହାତ ୪ ଭୂମିରେ ୪ ଗୋଟି ଝମକ ମାରବ ।

ଷୋଡ଼ଶ ଚକ୍ରଂ କୁ ମ୍ଭା ପଞ୍ଚଦଶ ଚ ଆଦକଂ
ଘୋଷଂ ଚ ତକ କର୍ତ୍ତବ୍ୟଂ କଟମଣୈବଚ ବଦ୍ଧୁକ

୧୬ ଚକ୍ର ରଥକୁ ଆୁରି ୧୫ ପା କରବ । ଏହି ପ୍ରକାରେ ସମସ୍ତ ରଥ କରାଯାଏ ।

ନାଟେନ ଭଗଂ କୁର୍ବୀତ ଚତୁରସ୍ତ୍ର ସମଙ୍ଗକଂ
ଏକଂ ତାକ୍ତ୍ୟା ଛେଦନେ ଚ ଭଗ ଦ୍ୱୟଂ ପ୍ରକଳ୍ପୟେତ୍ ।

୮ ଭାଗ ଚଉଠାଇ ୩ ଭାଗ କଲା ପରେ ଭାଗେ କାଟି ଓ ଦୁଇ ଭାଗ ଛୁଡ଼ାଣ କରିବ ।

ପୂର୍ବ ଦ୍ୱାରେ ରସଂ ଚୈବ ଚତୁରସ୍ରଂ ତତଃପରଂ
ମୁକୁଟେ ସପ୍ତପାଦଂଚ ବଧିବନ୍ଧ ବନ୍ଧ କର୍ତ୍ତନଂ

ପୂର୍ବ ଦ୍ୱାର ଗଡ଼ ୬ ଚଉଠାଇ, ମୁକୁଟାଇ ୭ ପା• ମୁକୁଟାଇ ତଳକୁ ୬ ପା ଚଉଠାଇ ରଖି ପକ୍ଷ କାଟିବ ।

ଚତୁର୍ଦ୍ଦଶାଙ୍ଗୁଳା ପାଳିକା ଦ୍ୱାରେ କୁର୍ଯ୍ୟାଦ୍ଧ ତତଃପରଂ
ଚତୁର୍ହସ୍ତେ ଚ ବାଙ୍ଗୁଳଂ ସ୍ତମ୍ଭଂ ଚ ଶତସଂଖ୍ୟକଂ

ଦ୍ୱାରରେ ୧୪ ଆ ପାଳିକା ରଖିବ, ସ୍ତମ୍ଭ ୪ ହାତ ୪ ଆଙ୍ଗୁଳ ରଖିବ ।

ସେ ମଦ୍ୱାରେ ଚତୁରସ୍ରଂ ମୁକୁଟେ ସପ୍ତ ପାଦକଂ
ଦେବଶ୍ଚତୁର୍ଦ୍ଦଶାଙ୍ଗୁଳା ନେବଂ ପକ୍ଷସ୍ୟ କର୍ତ୍ତନଂ

ଉତ୍ତର ଦ୍ୱାର ଗଡ଼ ୦ ଚଉଠାଇ ରଖିବ ମୁକୁଟାଇ ୭ ପା ଗୃର ଚଉଠାଇ ୧୪ ଆ ରଖି ପକ୍ଷ କାଟିବ ।

ପାଳକେ ଭୁବନଂ ଚୈବ ସ୍ତମ୍ଭେ ଘୋରେଣ କର୍ତ୍ତନଂ
ଦ୍ୱାରଂ ପଞ୍ଚ ହାତେବାଂ ବାପି ଚଞ୍ଚ କୁର୍ଯ୍ୟାତ ଭାଗକଂ

ଦ୍ୱାରଗଡ଼ା ପାଳିକା ୧୪ ଆ ଦ୍ୱାରଗଡ଼ା ଖମ୍ବ ୨ ଦ୍ୱାରଗଡ଼ା ପାଲିକାଙ୍କୁ ଦ୍ୱାରକୁ କଣ୍ଠ କାଟିବ ।

ପଶ୍ଚିମଂ ଚ ଭବେଦ୍ୱାରଂ ଚତୁରସ୍ରେ ଦ୍ୱିଭାଗକଂ
ମୁକୁଟେ ଧନ୍ତ୍ର ପାଦଂଚ ମୁକୁଟାଧଃ ତଥୈବଚ

ପଶ୍ଚିମଦ୍ୱାର ଗଡ଼ ୪ ଚଉଠାଇ ରଖିବ, ମୁକୁଟାଇ ୬ ପା ମୁକୁଟାଇର ତଳକୁ ୭ ପା ରଖିବ ।

ବାଣ ଭାଗଂ ଚ କୁର୍ଯ୍ୟା ଚ ପକ୍ଷସ୍ୟ କର୍ତ୍ତନଂ ତଥା
ଚତୁର୍ଦ୍ଦଶାଙ୍ଗୁଳା ଶ୍ଚୈବ ଚତୁର୍ହସ୍ତାରସାଙ୍ଗୁଳାଃ

୫ ଭାଗଣ୍ଡ ରଖି ପକ୍ଷ କାଟିବ, ଦ୍ୱାରଗଡ଼ା ପାଳିକା ୧୪ ଆ ଗଡ଼ଖମ୍ବ ହା ୪-୬ଆ ।

ଜନ୍ତୁପତେଦର୍ଶି ଦ୍ୱାରଂ ଚତୁରସ୍ତ୍ରଂ ତତଃପର
ମୁକୁଟେ ସପ୍ତ ପାଦଂ କଂ ଦଦ୍ୟାତ୍ ବୈସପ୍ତପାଦକଂ
ଦକ୍ଷିଣଦ୍ୱାର ଗଡ଼ ୪ ଚଉଠାଇ ମୁକୁଟାଇ ୭ ପା ।
ଚତୁର୍ଦ୍ଧଂଗାନ୍ ସ୍ଥାପୟିତ୍ୱା ଚତୁର୍ଦ୍ଧଂଶାଙ୍ଗୁଳାନ୍ ତଥା
ସ୍ତମ୍ଭକେ ପାଲକେ ଚୈବ ପରିଣାମେ ଚ କର୍ତ୍ତନଂ ।

୪ ଚଉଠାଇ ୧୪ ଆ ରଖି ପକ୍ଷ କାଟିବ ଦ୍ୱାରଗଡ ପାଲକାକୁ ଦ୍ୱାରକୁ କର୍ଣ୍ଣି ଖମ୍ବ କାଟିବ ।

ଅଷ୍ଟାଙ୍ଗୁଳା ଭବେଦ୍ଦୋଦ୍ଧ ଚତୁର୍ଦ୍ଧଂଚ ତତଃପରଂ
ପାଲକେ ତୋରଣଂ ଚୈବ ପକ୍ଷେଚ ଫାଲମାରଭେତ୍

ମୁକୁଟାଇ ତଳ ଗ୍ରିବ ୨ ହାତ ୨ ଚଉକ । ସେହି ଗ୍ରିବଠାରୁ ଉପରକୁ ଶ୍ରେଷ୍ଠ ପକାଇ ସେହି ଗ୍ରିବଠାରୁ ପାଲ୍‌କାକୁ ତୋରଣ ବସାଇବ । ତୋରଣରେ ପକ୍ଷୀ ଖଞ୍ଜି ତା ଉପରେ ବତା ମାରିବ ।

ଚତୁର୍ଦ୍ଧସ୍ତଂ ଭବେଦଗ୍ରଂ ହନନଂଚ ଚତଃପରଂ
କଣ୍ଠକେନ ରୁଦ୍ରମୁଖଂ ଚତୁଃସ୍ତମ୍ଭାନ୍ ସମଂକୁରୁ

ଦ୍ୱାରଗଡ଼ା ଉପରକୁ ଶ୍ରେଷ୍ଠ ୪ ହାତ ମଧ୍ୟମ ଭୂମି ଗ୍ରିବେ କଣ୍ଠା ବନ୍ଧ ୪ ଦ୍ୱାରଗଡ଼ ଖମ୍ବ ସମାନ କରିବ ।

ନାନାବତାରଂ ପୁରୁଷଂ ପୁରାଣଂ
ବୌଦ୍ଧାବତାରଂ ଯଦ୍ଧ ଘୋଷଂ ଚ
ତ୍ରିମୂର୍ତ୍ତିନାଂ ଦ୍ୱାରଷଟ୍କଂ ଚ ଯୋଗ୍ୟ
ମେକେ ଚତୁର୍ଦ୍ଧିକ୍ଷୁ ସମଂ ଚ ଭବେତଃ ।

ଅନାଦି ପୁରୁଷ ବାସୁରୂପୀ ଭଗବାନଙ୍କର ଯେଉଁ ଅବତାର ପୁରାଣ ବର୍ଣ୍ଣିତ ହୋଇଅଛି, ସେଥି ମଧ୍ୟରୁ ବୌଦ୍ଧାବତାର ରଥ ପ୍ରସିଦ୍ଧ ଅଟେ । ଗୋଟିଏ ରଥରେ ଯେବେ ତିନମୂର୍ତ୍ତି ବିଜେ କରିବେ ତେବେ ପୂର୍ବ ଦ୍ୱାରଗଡ଼ା ୬ ଚଉଠାଇ ରଖିବ । ଏକ ମୂର୍ତ୍ତି ଯେବେ ବିଜେ ହେବେ ୪ ଦ୍ୱାରଗଡ଼ା ତେବେ ୪ ଚଉଠାଇ ରଖିବ ।

## ଦଧିନଉ୍ତ ପରିମାଣ

ପ୍ରତିପାଦଂ ଭବେତ୍ ସପ୍ତ ଉଚ୍ଚଂ ବିସପ୍ତ ଶୃଙ୍ଗୁଳାଃ
ଫାଳଦ୍ୱୟେ ଭବେତ୍ ସପ୍ତ ସ୍ତୁର୍ଦ୍ଧେଂଚ କୂର୍ମକାକୃତଂ ।

ଦଧି ନଉ୍ତ ୭ ପା ଓସାର, ଫାଳ ଗୋଟିକ ଉଚ୍ଚ ୨୧ ଆଙ୍ଗୁଳ ଦୁଇ ଫାଳ ୭ ପା ତଳପଟ ସର ହେବ, ଉପର ପଟ କୂର୍ମକାର ହେବ । କାଛ ବାହାରିବ ।

ଦଧି ଖଣ୍ଡେ ଚ ଚଙ୍କଂ ଚ ଦ୍ୱାଦଶାଙ୍ଗୁଳ ମୁତ୍ତମଂ
ତଦୁର୍ଦ୍ଧ୍ୱଂଚ ଭବେତ୍ କଣ୍ଠଂ ଦାପାଙ୍ଗୁଳେନ୍ତ ନଷ୍ଟସ୍ୟଃ ।

ଦଧି ନଉ୍ତ ତଳ ଚକା ୧୨ ଆ ତହିଁର ଉପରେ ଗଳା ୧୦ ଆଙ୍ଗୁଳ ।

ଚତୁର୍ଦ୍ଦଶ ଭବେତ୍ ପାଦଂ ତ୍ୟକ୍ତ୍ୱା ଗଜସ୍ଥଳଂ ତଥା
ଖଣ୍ଡାଧଃ କୃତରେନ୍ଦ୍ରଚ ଚପେଟେ ପରିରନ୍ଦ୍ରକଂ

ଗଜସ୍ଥଳ ଗୁଡ଼ ୧୪ ପା, ଦଧି ନଉ୍ତ ତଳର ବନ୍ଧ ଆଡ଼ୁ ଗୃହପଟ ବନ୍ଧ, ଉପର ବନ୍ଧ ଚଉରସ ହେବ ।

## କନକମଣ୍ଡପର ପରିମାଣ

ଦ୍ୱାଦଶାଙ୍ଗୁଳକଂ ଚୈବ ମୁଣ୍ଡଂଚ ଚତୁର୍ହସ୍ତକଂ
ସ୍ୱର୍ଣ୍ଣାଧଃ ପକ୍ଷିପେତ୍ ରନ୍ଧ୍ରଂ ହସ୍ତଂ ତ୍ୟକ୍ତ୍ୱାଚ ନାସ୍ୟକେ ।

କନକ ମୁଣ୍ଡ କାଣ୍ଡ ୪ ହାତ ୧୨ ଆ, କନକ ମୁଣ୍ଡରେ ଓସ୍ୱା ତଳକୁ ୧ ହାତ ଗୁଡ଼ ନାସିକାରେ ବନ୍ଧିବ ।

ଶରଂମୁକ୍ତ୍ୟାତ୍ ବାହ୍ୟଦେଶେ ମୁଖାଟେ ନାସ୍ୟକେ ତଥା
ତନ୍ମଧ୍ୟେ ପନସାକାରଂ ଦ୍ୱଥୋରଂ ମଧ୍ୟ ନାସ୍ୟକେ ।

କାଣ୍ଡ ଦେଇ ନାସିକା ବାହାର ପାଖରେ କୁଣ୍ଡାଟ ଖଞ୍ଜିବ ମଧ୍ୟରେ ପନସା ଦେଇ ନାସିକା ପନସା ମଧ୍ୟରେ ଶ୍ରେଣୀ ଦ୍ୱଥୋର ଅନୁକ୍ରମରେ ଦେବ ।

ତତ୍ପୃରେ ବଂଶକଂ ଚୈବ ଚତୁର୍ଦ୍ଧଂଶଂ ତଥୈବଚ
ଚତୁର୍ଦ୍ଧିଷୁଚ କୁର୍ଯ୍ୟାତ୍ତୁ ପରିଣାମେ ଯଥାକ୍ରମଂ ।
ପାର୍ଶ୍ୱକେ ୧୪ ଚୁଅ ଦେଇ ଦ୍ୱାର ନିର୍ମାଣ କରିବ ।

—*—

## ସମକୋଣଯୁକ୍ତ ତ୍ରିଭୁଜ




୨୦ ଫୁଟ

ସମକୋଣ ବିଶିଷ୍ଟ ତ୍ରିଭୁଜର ସମକୋଣ ସଂଲଗ୍ନ ଦୁଇପାର୍ଶ୍ୱରେ ଥିବା ବାହୁର ପରିମାଣ ଜଣାଥିଲେ ଅପର ପାର୍ଶ୍ୱର ଦୀର୍ଘ ଜାଣିବାକୁ ହେଲେ ନିମ୍ନଲିଖିତ ନିୟମ ଅନୁସରଣ କରିବାକୁ ହେବ ।

କ, ଖ, ଗ, ଗୋଟିଏ ସମକୋଣ ବିଶିଷ୍ଟ ତ୍ରିଭୁଜ । ଯହିଁରେ କୋଣ ଖ, ସମକୋଣ ଅଟେ ।

ସୂତ୍ର—କଖ (ବର୍ଗ)+ଖଗ (ବର୍ଗ)=କଗ (ବର୍ଗ)

ବା କଖ×କଖ+ଖଗ×ଖଗ=କଗ×କଗ

କଖ=୧୫ ଫୁଟ ଖଗ=୨୦ ଫୁଟ,

ଏଣୁ—କଗ (ବର୍ଗ)=(୧୫×୧୫)+(୨୦×୨୦)

=୨୨୫+୪୦୦=୬୨୫

ତେଣୁ କଗ ର ବର୍ଗମୂଳ = ୬୨୫ ର ବର୍ଗମୂଳ
= କଗ ର ଦୀର୍ଘତା

```
୨ | ୬୨୫ ( ୨୫ )
  | ୪
  |-----
  | ୨୨୫
  |
୪୫| ୨୨୫
```

୬୨୫ର ବର୍ଗମୂଳ = ୨୫

ତେଣୁ କଗ ର ଦୀର୍ଘତା = ୨୫ ଫୁଟ

—※—

## ଗୋଲାକାର ମାପ

୨୨ ଇଞ୍ଚ




ଦ୍ୱାବିଂଶଘ୍ନ୍ୟା ତ ମଧ୍ୟଂବେ ଗୁଣିତ୍ୱା ସପ୍ତକେନତ
ହରଣେ ବର୍ତ୍ତୁଳଂ ଜ୍ଞେୟଂ ନକୁର୍ଯ୍ୟାତ୍ ତତ୍ର ସଂଶୟଃ

ଗୋଲାକାରର ମଧ୍ୟରେଖା ( ବ୍ୟାସ ) ଯାହା ହେବ ତାକୁ ୨୨ ରେ ଗୁଣି ୭ ହରିଲେ ଯାହା ଫଳ ପଡ଼ିବ, ସେ ଗୋଲାକାରର ପରିଧି ମାପ ଅଟେ ।

ଗୋଲକାର ମଧ୍ୟ ରେଖାର ଲମ୍ବ ୭ ଇଞ୍ଚ

ତେବେ ୭×୨୨=୧୫୪÷୭=୨୨ ଇଞ୍ଚ

—*—

## ଗୃଲମାପ




ଷଡ୍ ଭଗୁଣିତ୍ୱା ଦୂଲାର୍ଦ୍ଧଂ ପଞ୍ଚଭିଷ୍ଟାପି ହାରଯେତ୍

ଲବ୍ଧମାମାସ୍ତୁ କ୍ଷେତ୍ରଂତ୍ରୁ ନନ୍ଦର୍ମୀନଂ ତତପରଂ ।

ଘରର ଦୂଲ୍ଲା ଯେତେ ହେବ, ତାହାର ଅର୍ଦ୍ଧକୁ ୬ରେ ଗୁଣି ୫ ହରିଲେ ଫଳ ଯାହା ହେବ ସେ ଗୃଳ ମାପ ଅଟେ ।

ମନେକର ଦୂଲର ଲମ୍ବ ୧୮ ଫୁଟ ୪ ଇଞ୍ଚ

ଏହାର ଅର୍ଦ୍ଧ ଫୁ ୯ -୨ ଇଞ୍ଚ

ତେଣୁ ଫୁ ୯—୨×୬=୫୫ ଫୁଟ

ଗୃଳର ମାପ ୫୫÷୫=୧୧ ଫୁଟ

—*—

## ଏକାଦଶ ପରିଚ୍ଛେଦ

### ଚନ୍ଦବସାଣ

### ପୃଥ୍ୱୀ କୂର୍ମ ବ୍ୟବସ୍ଥା

ପୃଥ୍ୱୀ କୂର୍ମ ସମାଖ୍ୟାତଃ କୃତ୍ତିକାଦ୍ଧ ସମାନ୍ତକଃ

ଦେଶାଦ୍ଧ ସ୍ୱସ୍ୱରକ୍ଷାଦ୍ଧ ବକ୍ଷେ କୂର୍ମ ଚତୁଷ୍ଟୟଂ ।

# କୂର୍ମ ଚକ୍ର




କୃତ୍ତିକାଠାରୁ ଆରମ୍ଭ କରି ଦ୍ୱିଜା ପର୍ଯ୍ୟନ୍ତ ସତାଇଶ ନକ୍ଷତ୍ର ବିଶିଷ୍ଟ ପୃଥ୍ୱୀ କୂର୍ମନାମରେ ଯାହା ଖ୍ୟାତ ହୋଇଅଛି ତାହାର ସ୍ଥାନ ଓ ନକ୍ଷତ୍ର ନିର୍ଦ୍ଦେଶ କରାଯାଇ ଅଛି । ଯଥା—ମୁଖେ ପୂର୍ବେ ୩।୪।୫ ଦେହର ଅଗ୍ନି କୋଣେ ୬।୭।୮ ଦେହର ଦକ୍ଷିଣ କକ୍ଷେ ୯।୧୦।୧୧ ଦେହର ନୈଋତ କୋଣେ ୧୨।୧୩।୧୪ ଗୁହ୍ୟେ ୧୫।୧୬।୧୭ ଦେହର ବାୟୁକୋଣେ ୧୮।୧୯।୨୦ ଦେହର ବାମ କକ୍ଷେ ୨୧।୨୨।୨୩ ଦେହର ଐଶାନ୍ୟ କୋଣେ ୨୪।୨୫।୨୬ ଦେହର ମଧ୍ୟେ ୨୭।୧।୨ ଏହିପରି ନବଅଙ୍ଗେ ନକ୍ଷତ୍ର ମିଶ୍ରିତ ଦେଶ ସମସ୍ତ ଆବୃତ ହୋଇଅଛି ।

## କୂର୍ମଚକ୍ରର ମଧ୍ୟଦେଶଃ

ମଧ୍ୟେ ସାରସ୍ୱତାମତ୍ସ୍ୟାଃ ଶୂରସେନାଃ ସମାଥୁରାଃ
ପାଞ୍ଚାଳାଶାଲ୍ୱ ମାଣ୍ଡବ୍ୟ କୁରୁକ୍ଷେତ୍ର ଗଜାହ୍ୱୟାଃ
ମତ୍ସ୍ୟ ନୈମିଷ ବନ୍ଧ୍ୟାଦ୍ରି ଭାଗ୍ରାଘୋଷାଃ ସଯାମୁନାଃ
କାଶ୍ୟପାୟୋଧ୍ୟା ପ୍ରୟାଗାଦ୍ଧ୍ୱ ଗୟା ବୈଦେହକାଦୟଃ

ସରସ୍ୱତୀ, ମତ୍ସ୍ୟ, ଶୂରସେନ, ମାଥୁର, ପାଞ୍ଚାଳ, ଶାଲ୍ୱ, ମାଣ୍ଡବ୍ୟ, କୁରୁକ୍ଷେତ୍ର, ଗଜ, ମେରୁ, ନୈମିଷ, ବିନ୍ଧ୍ୟପର୍ବତ, ପାଣ୍ଡ୍ୟ ଘୋଷ, ଯମୂନା, କାଶୀ, ଅଯୋଧ୍ୟା, ପ୍ରୟାଗ, ଚମ୍ପା, ଓ ବୈଦେହ ପ୍ରଭୃତି ପ୍ରଦେଶ କୂର୍ମ ଚକ୍ରର ମଧ୍ୟସ୍ଥାନ ବୋଲି ଶାସ୍ତ୍ର ପ୍ରମାଣ ରହିଅଛି ।

## କୂର୍ମଚକ୍ରର ପୂର୍ବଦେଶ

ପ୍ରାଚ୍ୟାଂ ମାଗଧ ଶୋଣୌଚ ବାରେନ୍ଦ୍ରୀ ଗୌଡ଼ରାଢ଼କାଃ
ବର୍ଦ୍ଧମାନତମୋଲିପ୍ତ ପ୍ରାକ୍ ଜ୍ୟୋତିଷୋ ଦୟାଦୟଃ

କୂର୍ମ ଚକ୍ରର ପୂର୍ବଦିଗରେ ମଗଧ, ଶୋଣ, ବାରେନ୍ଦ୍ରୀ, ଗୌଡ଼ ବର୍ଦ୍ଧମାନ, ତମୋଲିପ୍ତ ପ୍ରାକ୍ ଜ୍ୟୋତିଷ ଓ ଉଦୟ ପ୍ରଭୃତି ସ୍ଥାନ ବିଦ୍ୟମାନ ।

## କର୍ମଚକ୍ରର ଅଗ୍ନିକୋଣସ୍ଥ ସ୍ଥାନମାନ

ଅଗ୍ନେୟ୍ୟାକଙ୍ଗ ବଙ୍ଗୋପ ବଙ୍ଗାସ୍ତ୍ରେ ପୁର କୋଶଳାଃ
କଳିଙ୍ଗୌ ଡାନ୍ଧ୍ର କିଷ୍କିନ୍ଧ୍ୟା ବିଦର୍ଭ ଶବରାଦୟଃ ।

କୂର୍ମଚକ୍ରର ଅଗ୍ନି କୋଣରେ ଅଙ୍ଗ, ବଙ୍ଗ, ଉପବଙ୍ଗ, ତ୍ରିପୁରା, କୋଶଳ, କଳିଙ୍ଗ, ଓଡ୍ର, ଆନ୍ଧ୍ର, କିଷ୍କିନ୍ଧ୍ୟା, ବିଦର୍ଭ ଓ ଶାବର ପ୍ରଭୃତି ସ୍ଥାନ ବିରାଜିତ ।

## କୂର୍ମ ଚକ୍ରର ଦକ୍ଷିଣଦିଗ ସ୍ଥାନମାନ

ଦକ୍ଷିଣେଽବନ୍ତୀ ମାହେନ୍ଦ୍ର ମଳୟା ଋଷ୍ୟମୂକକାଃ
ଚିତ୍ରକୂଟ ମହାରଣ୍ୟ କାଞ୍ଚି ସିଂହଳ କୋଙ୍କଣାଃ ।
କାବେରୀ ତାମ୍ର ପର୍ଣ୍ଣୀଚ ଲଙ୍କା ତ୍ରିକୂଟକାଦୟଃ

କୂର୍ମ ଚକ୍ରର ଦକ୍ଷିଣ ଦିଗରେ ଅବନ୍ତୀ, ମାହେନ୍ଦ୍ର, ମଳୟ, ଋଷ୍ୟମୂକ, ଚିତ୍ରକୂଟ, ମହାରଣ୍ୟ, କାଞ୍ଚି, ସିଂହଳ, କୋଙ୍କଣ, କାବେରୀ ତାମ୍ରପର୍ଣ୍ଣୀ ତ୍ରିକୂଟ ପ୍ରଭୃତି ସ୍ଥାନମାନ ବିଦିତ ।

## କୂର୍ମଚକ୍ରର ନୈର୍ଋତ କୋଣ ସ୍ଥାନମାନ

ନୈର୍ଋତେ ଦ୍ରାବିଡ଼ାନର୍ତ୍ତ ମହାରାଷ୍ଟ୍ରା ସ୍ତୁରୈବତାଃ
ଯବନଃ ପହ୍ଲବଃସିନ୍ଧୁଃ ପାରସୀକା ଦୟୋମତାଃ

କୂର୍ମ ଚକ୍ରର ନୈର୍ଋତ କୋଣେ ଦ୍ରାବଡ଼, ଆନର୍ତ୍ତ, ମହାରାଷ୍ଟ୍ର ରୈବତ, ଯବନ, ପହ୍ଲବ, ସିନ୍ଧୁ ଓ ପାରସ୍ୟ ପ୍ରଭୃତ ସ୍ଥାନ ଅବସ୍ଥିତ ।

## କୂର୍ମ ଚକ୍ରର ପଶ୍ଚିମ ଦିଗସ୍ଥିତ ସ୍ଥାନମାନ

ପଶ୍ଚିମେୟହୈହୟ ସ୍ତାଦ୍ରି ମ୍ଳେଚ୍ଛବାସ ଶକାଦୟଃ

କୂର୍ମଚକ୍ରର ପଶ୍ଚିମ ଦିଗରେ ହୈହୟ, ଅସ୍ତାଚଳ, ମ୍ଳେଚ୍ଛାବାସ ଓ ଶକ ପ୍ରଭୃତି ସ୍ଥାନ ବିରାଜିତ ।

## କୂର୍ମ ଚକ୍ରର ବାୟୁକୋଣାବସ୍ଥିତ ସ୍ଥାନମାନ

ବାୟବ୍ୟେ ଗୁର୍ଜ୍ଜରାଟଶ୍ଚ ନାଟଜଲନ୍ଧରାଦୟଃ

ଏହି କୂର୍ମଚକ୍ରର ବାୟୁକୋଣରେ ଗୁଜରାଟ ନାଟ ଓ ଜଳନ୍ଧର ପ୍ରଭୃତି ସ୍ଥାନମାନ ଅବସ୍ଥିତ ।

## କୂର୍ମ ଚକ୍ରର ଉତ୍ତରସ୍ଥିତ ସ୍ଥାନମାନ

ଉତ୍ତରେ ଚୀନ ନେପାଳହୂଣ—କୈକେୟ ମନ୍ଦରାଃ

ଗାନ୍ଧାରହିମବାନ୍ କ୍ରୌଞ୍ଚ ଗନ୍ଧମାଦନ ମାଳବାଃ

କୈଳାସ ମଦ୍ର, କାଶ୍ମୀର - ମ୍ଳେଚ୍ଛଦେଶା ଖସାଦୟଃ ।

କୂର୍ମ ଚକ୍ରର ଉତ୍ତରାଂଶରେ ଚୀନ, ନେପାଳ, ହୂଣ, କୈକେୟ, ମନ୍ଦର, ଗାନ୍ଧାର, ହିମବାନ୍, କ୍ରୌଞ୍ଚ, ଗନ୍ଧମାଦନ, ମାଳବ, କୈଳାସ ମଦ୍ର, କାଶ୍ମୀର, ମ୍ଳେଚ୍ଛଦେଶ ଓ ଖସାଦି ସ୍ଥାନମାନ ଅବସ୍ଥିତ ହୋଇଅଛି ।

## କୂର୍ମଚକ୍ରର ଐଶାନ୍ୟ କୋଣ ସ୍ଥାନମାନ

ଐଶାନ୍ୟେ ସ୍ୱର୍ଣ୍ଣଭୌମଶ୍ଚ ଗଙ୍ଗାଦ୍ୱାରଞ୍ଚ ଟଙ୍କଣଃ

ବାହ୍ଲୀକ ବ୍ରହ୍ମପୁରକ କବଟା ବରଦାଦୟଃ ।

କୂର୍ମଚକ୍ରର ଐଶାନ୍ୟ କୋଣରେ ସ୍ୱର୍ଣ୍ଣଭୌମ, ଗଙ୍ଗାଦ୍ୱାର, ଟଙ୍କଣ, ବାହ୍ଲୀକ, ବ୍ରହ୍ମପୁରକ, କବଟ ଓ ବରଦ ପ୍ରଭୃତି ସ୍ଥାନମାନ ଅବସ୍ଥିତ ହୋଇଅଛି ।

## କୂର୍ମ ଚକ୍ରର ନକ୍ଷତ୍ର ବୋଧଫଳ

ମଧ୍ୟପ୍ରାଗଗ୍ନି ଯାମ୍ୟାଦ୍ଧ କୃତ୍ତିକାଦ୍ଧ ତ୍ରୟୋତ୍ରୟୈଃ
କ୍ରୂରବେଧଯୁତୈସ୍ତୈସ୍ତୁ ପୀଡ଼୍ୟନ୍ତେ ତନ୍ନିବାସିନଃ ।

କୂର୍ମଚକ୍ରର ମଧ୍ୟ, ପୂର୍ବ, ଅଗ୍ନିକୋଣ ଓ ଦକ୍ଷିଣ ଦିଗରେ କୃତ୍ତିକାଦି ନକ୍ଷତ୍ର ଯଦ୍ଦିତ କ୍ରୂର ଗ୍ରହଦ୍ୱାରା ବିଦ୍ଧ ବା ତଦ୍‌ଯୁକ୍ତ ହୁଏ ତେବେ ସେହି ଦେଶବାସୀ ପ୍ରାଣୀମାନେ ପୀଡ଼ିତ ହୁଅନ୍ତି ।

## କୂର୍ମଚକ୍ରର ନକ୍ଷତ୍ର ବେଧ

ପୂର୍ବାପରେ ଭବେଦ୍ ବୋଧୋ ବେଧଶ୍ଚୋତ୍ତର ଦକ୍ଷିଣେ
ଐଶାନେ୍ୟ ରାକ୍ଷସେ ବେଧୋ ବେଧ ଆଗ୍ନେୟ ମାରୁତେ
ତାରକତ୍ରୟାନ୍ତ ତଂ ତତ୍ରସୌଶଂ ଯତ୍ନେନ ଚିନ୍ତୟେତ୍ ।

କୂର୍ମଚକ୍ରରେ ପୂର୍ବକୁ ପଶ୍ଚିମ ବେଧ ଓ ଉତ୍ତରକୁ ଦକ୍ଷିଣବେଧ ଐଶାନ୍ୟ କୋଣକୁ ନୈର୍ଋତ କୋଣବେଧ ଅଗ୍ନିକୋଣକୁ ବାୟବ୍ୟ କୋଣ ବେଧ ଅଟେ । ମଧ୍ୟସ୍ଥ ନକ୍ଷତ୍ର ପ୍ରାୟ ସମସ୍ତ ପ୍ରତି ବେଧହୁଏ ଏବଂ ଯେଉଁ ତିନ ତିନ ନକ୍ଷତ୍ର ଚକ୍ରରେ ଦିଆଯାଇ ଅଛି ତାହାଦ୍ୱାରା ଯେପରି ଶନିର ଦୃଷ୍ଟି ନ ହୁଏ । ଏ ବିଷୟରେ ବିଶେଷ ଚିନ୍ତାକରିବ ।

## ନାଗଶୟନ ଚକ୍ର

ନାଗ ସର୍ବଦା ବାମ ପାଖ ମାଡ଼ି ଶୟନ କରେ । ଭାଦ୍ର ଆଶ୍ୱିନ କାର୍ତ୍ତିକ ମାସରେ ପୂର୍ବ ଦିଗକୁ ମାର୍ଗଶିର ପୌଷ ଓ ମାଘ ମାସରେ ଦକ୍ଷିଣ ଦିଗକୁ ଫାଲ୍‌ଗୁନ ଚୈତ୍ର ଓ ବୈଶାଖ ମାସରେ ପଶ୍ଚିମ ଦିଗକୁ ଜ୍ୟେଷ୍ଠ ଆଷାଢ଼ ଶ୍ରାବଣ ମାସରେ ଉତ୍ତର ଦିଗକୁ ମସ୍ତକ ଦେଇ ନାଗ ଶୟନ କରଇ । ମସ୍ତକ ପୃଷ୍ଠ ଓ ପୁଚ୍ଛ ଦେଶରେ ଗୃହ କରିବାର ନିଷେଧ ।

## ନାଗଶଯ୍ୟନ ଚକ୍ର




## ନାଗଶଯ୍ୟନ ବଶିଷ୍ଟ ମାସରେ ଗୃହ କର୍ତ୍ତବ୍ୟ

ଭଦ୍ରାଦଷୁତ ମାସେଷୁ କର୍ତ୍ତବ୍ୟଂ ସିଂହ ମନ୍ଦରଂ
ବୃଷାଗାରନ୍ତୁ କର୍ତ୍ତବ୍ୟଂ ମାର୍ଗଶୀର୍ଷାଦଷୁକ୍ରିଷୁ ।
ଫାଲ୍‌ଗୁନାଦଷୁ ମାସେଷୁ ଗଜାଗାରନ୍ତୁ କାରୟେତ୍
ଧ୍ୱଜାଗାରନ୍ତୁ କର୍ତ୍ତବ୍ୟଂ ଜ୍ୟେଷ୍ଠ ମାସାଦଷୁକ୍ରିଷୁ ।

ଭଦ୍ର ଆଶ୍ୱିନ ଓ କାର୍ତ୍ତିକ ମାସରେ ସିଂହ ବନ୍ଧରେ ମାର୍ଗଶୀର ପୌଷ ଓ ମାଘ ମାସରେ ବୃଷ ବନ୍ଧରେ ଫାଲ୍‌ଗୁନ ଚୈତ୍ର ଓ ବୈଶାଖ ମାସରେ ଗଜବନ୍ଧରେ ଓ ଜ୍ୟେଷ୍ଠ ଆଷାଢ଼ ଶ୍ରାବଣ ମାସରେ ଧ୍ୱଜବନ୍ଧରେ ଗୃହ କରିବା ଶୁଭପ୍ରଦ ଅଟେ ।

## ଧ୍ୱଜାଦ୍ୱ ବନ୍ଧରେ ଗୃହ ଦ୍ୱାର ନିର୍ଣ୍ଣୟ

ଧ୍ୱଜେ ସର୍ବମୁଖେ ଧନ୍ୟ ପ୍ରତ୍ୟକ୍ ଦ୍ୱାରେ ବିଶେଷତଃ
ଉଦଙ୍ମୁଖେ ଭବେତ୍ ସିଂହଂ ପ୍ରାଙ୍ମୁଖୋବୃଷଶ୍ଚୋଭବେତ

ଦକ୍ଷିଣାଭିମୁଖୋ ଧ୍ୱଜ ପ୍ରାଙ୍ମୁଖ ଉଦାହୃତଃ
ପଞ୍ଚଭିର୍ଦ୍ୱିଷଭିଃ ପ୍ରୋକ୍ତୋ ବକୋଣସ୍ଥାଂସ୍ତୁ ବର୍ଜୟେତ୍ ।

## ଧ୍ୱଜାଦି ସ୍ଥାପନ ବିଧିଚକ୍ର

ଅଗ୍ନିକୋଣ ଦକ୍ଷିଣ ନୈର୍ଋତ




ଈଶାନ ଉତ୍ତର ବାୟୁ

ଧ୍ୱଜବନ୍ଧରେ ମଙ୍ଗଳ ଦାଗରେ ଗୃହ ଉତ୍ତମ, ତହିଁ ମଧ୍ୟରେ ପଶ୍ଚିମମୁଖେ ଗୋଟିଏ ଦ୍ୱାର, ସିଂହ ବନ୍ଧରେ ଉତ୍ତରମୁଖେ ତିନି-ଗୋଟି ଦ୍ୱାର, ବୃଷ ବନ୍ଧରେ ପୂର୍ବମୁଖେ ପାଞ୍ଚଗୋଟି ଦ୍ୱାର, ଗଜ ବନ୍ଧରେ ଦକ୍ଷିଣମୁଖେ ମାତ୍ର ଗୋଟିଏ ଦ୍ୱାର ପ୍ରଶସ୍ତ । କିନ୍ତୁ ବକୋଣସ୍ଥ ଗୃହ ଓ ଦ୍ୱାର ସର୍ବଥା ବର୍ଜନୀୟ ।

## ସାମାନ୍ୟାକାର ଗୃହଭୂମି ମଧ୍ୟେ ଗୃହ ମାନଚିତ୍ର




## ଦ୍ୱାଦଶ ପରିଚ୍ଛେଦ

ସାମାନ୍ୟାକାର ସମଚତୁରସ୍ର ବା ଆୟତନାଦି ବାସ୍ତୁ ଭୂମି କରି ତାହାକୁ ଧ୍ୱଜ, ସିଂହ, ବୃଷ ଓ ଗଜ ବନ୍ଧରେ ଗୃହ କରିବାକୁ ହେଲେ କାକ ଧୂମ୍ର ଶ୍ୱାନ ଓ ଖର ସାହାଯ୍ୟ ଗ୍ରହଣ କରିବାକୁ ହେବ ଏବଂ ସବନ୍ଧ ଏକଶାଳା, ଦ୍ୱିଶାଳା, ତ୍ରିଶାଳା ଓ ଚତୁଃଶାଳା ଗୃହହେବ କେବଳ ବୃଷ ଓ ସିଂହ ବନ୍ଧରେ ଦ୍ୱିଶାଳା ହେବାର ବ୍ୟବସ୍ଥା ଅଛି ।

ଆୟତନାଦି ଗୃହ ପ୍ରକାର ବାସ୍ତୁ ଭିଟା ସମତଳ ବା ସମଚତୁରସ୍ର ନିର୍ମାଣ କରି ତହିଁରେ ବାସ କରିଲେ କୌଣସି ଦୋଷ ରହେ ନାହିଁ । ଏହି ବାସ୍ତୁ ଭୂମିକୁ ରମ୍ଭା ବୃକ୍ଷାଦି ଦ୍ୱାରା ସୁଶୋଭିତ କରିବେ ତଦୁପରେ ପୂର୍ବଠାରୁ ପଶ୍ଚିମ ପର୍ଯ୍ୟନ୍ତ ସୂତ୍ର ବିସ୍ତାର କରିଲେ ଏହି ସୂତ୍ର ବିଶିଷ୍ଟ ସୂର୍ଯ୍ୟ ଦଣ୍ଡ ଓ ଦକ୍ଷିଣଠାରୁ ଉତ୍ତର ପର୍ଯ୍ୟନ୍ତ ବିସ୍ତାର କରିଲେ ଏହି ସୂର୍ଯ୍ୟ ବିଶିଷ୍ଟ ଯମଦଣ୍ଡ ହୁଏ । ସୂର୍ଯ୍ୟ ଦଣ୍ଡରେ

ସପ୍ତାଙ୍ଗୁଳ ପରିମାଣ ଓ ଯମ ଦଣ୍ଡରେ ଦ୍ୱାଦଶାଙ୍ଗୁଳ ପରିମାଣ ଧ୍ୱଜାଦି ସ୍ଥାପନ କରିବ ।

## ବୃହଦାକାର ଗୃହଭୂମିର ମାନଚିତ୍ର




ଈଶାନ୍ୟ କୋଣଠାରୁ ନୈର୍ଋତ କୋଣ ପର୍ଯ୍ୟନ୍ତ ଓ ବାୟୁ କୋଣଠାରୁ ଅଗ୍ନିକୋଣ ପର୍ଯ୍ୟନ୍ତ ସୂତ୍ର ବିସ୍ତାର କରିଲେ ଏହି ସୂତ୍ର ବିଶିଷ୍ଟ କୋଣଦଣ୍ଡ ହୁଏ କିନ୍ତୁ ସୂର୍ଯ୍ୟଦଣ୍ଡ ଆକ୍ରମଣ କରି ଗୃହ କରିଲେ ଅଗ୍ନିଭୟ ଯମ ଦଣ୍ଡରେ କୁଳକ୍ଷୟ କୋଣ ଦଣ୍ଡରେ ରୋଗଗ୍ରସ୍ତ ଓ ବାୟୁର ଅନ୍ତ ଗୃହ କରିଲେ ସର୍ବନାଶ ହୁଏ । କିନ୍ତୁ ଈଶାନ୍ୟ କୋଣଠାରୁ ନୈର୍ଋତ କୋଣ ପର୍ଯ୍ୟନ୍ତ ଯେଉଁ ରେଖା ହୁଏ ସେହି ରେଖାର ପ୍ରଥମ ଅଙ୍କନର ଦକ୍ଷିଣେ ଧ୍ୱଜାଦି ଅଷ୍ଟ ପ୍ରକାର ସ୍ଥାନ ନିର୍ଣ୍ଣୟ କରିବେ ।

## ଧ୍ୱଜାଦ୍ୱ ଗୃହମୁଖ ନିର୍ଣ୍ଣୟ

ପଶ୍ଚିମାସ୍ୟାଂ ଧ୍ୱଜେବେଶ୍ମ, ସିଂହେତ୍ତୁଦଙ୍ ମୁଖଂଶୁଭଂ
ପୂର୍ବସ୍ୟଞ୍ଚ ବୃଷସ୍ଥାନେ ଦକ୍ଷିଣାଭ୍ ମୁଖଂଗଜେ

ଧ୍ୱଜ ବନ୍ଧରେ ପଶ୍ଚିମ ମୁଖେ, ସିଂହ ବନ୍ଧରେ ଉତ୍ତର ମୁଖେ ବୃଷ ବନ୍ଧରେ ପୂର୍ବମୁଖେ ଓ ଗଜ ବନ୍ଧରେ ଦକ୍ଷିଣ ମୁଖରେ ଗୃହର ଶୁଭଦେବା ବଧେୟ ।

## ମତାନ୍ତରେ ଗୃହଭୂମି ମାନଚକ୍ର




ପ୍ରଶ୍ନ—ଗୃହାରମ୍ଭ କରିବାକୁ ହେଲେ ଧ୍ୱଜାଦ୍ୱ କ୍ରମେ କେଉଁ ଦିଗକୁ ଗୃହ କରିବାକୁ ହେବ କେଉଁ ଦିଗର କେତେ ଅଂଶ ବାଦ ଦେଇ କେତେ ଅଂଶ ଗ୍ରହଣ କରି ଏକଶାଳାଦ୍ୱ ଗୃହ କଲେ ଭଲ ହୁଏ ?

ଉତ୍ତର - ଯାହାର ଜନ୍ମ ଲଗ୍ନାଧିପ ଯେଉଁ ଦିଗର ଅଧିପତି ହେବେ ସେହି ଦିଗ ଗୃହ କରିଲେ ଭଲ ଫଳ ହୁଏ । ଗୃହ କରିବା

ପୂର୍ବରୁ ରବିଶୁଦ୍ଧି ଓ ନାଗଶୁଦ୍ଧି ଦେଖିବାକୁ ହୁଏ । ଆଉ ମଧ୍ୟ ଏକଶାଳା ଗୃହ କରିଲେ ନାଗଶୁଦ୍ଧି ଓ ନକ୍ଷତ୍ର ଶୁଦ୍ଧି ଦେଖିବାକୁ ହୁଏ ଦ୍ୱିଶାଳା, ତ୍ରିଶାଳା ଓ ଚତୁଃଶାଳା ଗୃହ କରିବାକୁ ହେଲେ ନାଗଶୁଦ୍ଧି ଓ ନକ୍ଷତ୍ର ଶୁଦ୍ଧି ଦେଖିବାକୁ ହୁଏ ନାହିଁ ।

ଗୃହ କରିଲେ ବାସ୍ତୁ ଭୂମିର ଗୃହଦ୍ୱାରର ଶେଷ ଭାଗକୁ ପ୍ରେତ ଭାଗ କୁହାଯାଏ । ଅର୍ଥାତ୍ ଆଠା ବାସ୍ତୁ ଭୂମିର ଦୀର୍ଘ ବା ପ୍ରସ୍ଥକୁ ଅଠାଇଶ ଦ୍ୱାରା ଭାଗ କରିଲେ ଭାଗଫଳ ଯାହାହେବ ସେହି ଅଙ୍କ ଆଠାର ପରିମାଣ । ଏହିରୂପେ ନରଭାଗ, ଗନ୍ଧର୍ବ ଭାଗ ଓ ଦେବତାର ଭାଗ ହୁଏ । କେବଳ ପ୍ରେତଭାଗ ବାଦକରି ଅନ୍ୟଭାଗରେ ଗୃହ କରିଲେ ଶୁଭ ହୁଏ ।

ଯେଉଁବ୍ୟକ୍ତି ଅଜ୍ଞାନ ଓ ମୋହବଶତଃ ଅନ୍ୟ ନିର୍ମିତ ଗୃହରେ ବାସକରେ ତାହାର ସୁଖ ହୁଏ ନାହିଁ । ଗୃହାଳ ଧ୍ୱଜ କିବା ବୃଷ ବନ୍ଧରେ କରିଲେ ଭଲ ହୁଏ । ଅର୍ଥାତ୍ ପୂର୍ବଦ୍ୱାରୀ ବା ପଶ୍ଚିମ ଦ୍ୱାରୀ କରିବା ବିଧେୟ ।

ମେଷ, ସିଂହ, ଧନୁ, ତୁଳା ବୃଶ୍ଚିକ କର୍କଟ ରାଶି ବର୍ଜନ କରି ଅନ୍ୟ ଛଅ ରାଶିରେ ଗୋଶାଳା କରିବେ କିନ୍ତୁ ଏହା ସମ୍ମତ ନୁହେ

| | ୮ | | ୧୬ | | ୨୪ | |
|---|---|---|---|---|---|---|
| | ୭ | | ୧୫ | | ୨୩ | |
| ୧ | ୬ | ୯ | ୧୪ | ୧୭ | ୨୨ | ୨୫ |
| ୨ | ୫ | ୧୦ | ୧୩ | ୧୮ | ୨୧ | ୨୬ |
| ୩ | ୪ | ୧୧ | ୧୨ | ୧୯ | ୨୦ | ୨୭ |

ଗୃହ କର୍ତ୍ତିକା ଚକ୍ର

*ଏହି ଗୃହକର୍ତ୍ତିକାଚକ୍ରର ବିବରଣ ପୃ୯୧ଷ୍ଠାରେ ଉଲ୍ଲେଖ ହୋଇଅଛି*



କୂର୍ମ ଭୂମି



ଶକଟ ଭୂମି



ସ୍ୱର୍ଗ ଭୂମି



ମୁରୁଜ ଭୂମି



ବିଧନ୍ନନ ଭୂମି



ଭଦ୍ରାସନ ଭୂମି



ଚକ୍ର ଭୂମି



ବୃହନ୍ମୁଖ ଭୂମି



ଦଣ୍ଡ ଭୂମି



ବିଷମ ଭୂମି



ପ୍ରଣବ ଭୂମି



ଧନୁଆକାର ଭୂମି

## କୂର୍ମଭୂମି ଲକ୍ଷଣ

୧—ସୁଚ୍ଚମଧ୍ୟ ପ୍ରଦେଶଞ୍ଚ ଚତୁଃପାର୍ଶ୍ୱେସ୍ଥିତ ନିମ୍ନକମ୍
କୂର୍ମପୃଷ୍ଠଂ ତଥାକ୍ଷେତ୍ରଂ ସର୍ବସୁଖାପହାରକମ୍

ଯେଉଁ ଭୂମି କୂର୍ମ ପୃଷ୍ଠାକାର ଓ କ୍ଷେତ୍ରର ମଧ୍ୟଭାଗ ଅତିଶୟ ଉଚ୍ଚ ଏବଂ ଚତୁଃପାର୍ଶ୍ୱ ଅତିଶୟ ନିମ୍ନ ସେ ଭୂମିକୁ କୂର୍ମପୃଷ୍ଠ କହନ୍ତି ସେହି ବାସ୍ତୁରେ ଗୃହ କଲେ ସର୍ବ ସୁଖ ହରଣ ହୁଏ ।

## ଶକଟାକାର ଭୂମିର ଲକ୍ଷଣ

୨—ଯଂ କ୍ଷେତ୍ରଂ ଶକଟାକାରଂ କୃଶମଧ୍ୟଂ ଭବେତ୍ତ୍ ସଦା
ଆଦ୍ୟନ୍ତ ବିସ୍ତୃତଂତସ୍ୟ ଶକଟାଖ୍ୟଂ ବୁଧୈଃସ୍ମୃତଂ

ଶକଟାକାର ଭୂମିର ମଧ୍ୟଭାଗ କ୍ଷୀଣ ଏବଂ ଆଦ୍ୟନ୍ତ ବିସ୍ତୃତ ଅଟେ । ଏପରି ଭୂମିରେ ଗୃହ କଲେ ଗୃହ ସଙ୍କଟମୟ ହୁଏ ।

## ସର୍ପ ଭୂମି ଲକ୍ଷଣ

୩—ସର୍ପାକାରଂତ୍ୱ ଯତ୍‌କ୍ଷେତ୍ରଂ ସର୍ପାଖ୍ୟଂ କଥିତଂବୁଧୈଃ
ପତ୍ନୀଭ୍ରଷ୍ଟାଭବେତସ୍ମିନ୍ କର୍ତ୍ତୁଃ ପ୍ରାଣ ବିନାଶକମ୍

ସର୍ପାକାର ଭୂମିକୁ ପଣ୍ଡିତମାନେ ସର୍ପଭୂମି କହନ୍ତି । ସେ ଭୂମିରେ ବାସ କଲେ ପତ୍ନୀ ଚରିତ୍ରହୀନା ହୁଅନ୍ତି ନତୁବା ଗୃହ କର୍ତ୍ତାର ମୃତ୍ୟୁ ଘଟେ ।

## ମୁରଜ ଭୂମି ଲକ୍ଷଣ

୪—ସ୍ଥୂଳମଧ୍ୟଞ୍ଚ ଯତ୍ କ୍ଷେତ୍ରଂ ପାର୍ଶ୍ୱେତେତ୍ ସ୍ଥୂଳସୂକ୍ଷ୍ମକୌ
ଭବେନ୍ମୁରଜ କ୍ଷେତ୍ରଂ ପ୍ରାଣୀନାଂ ଦୁଃଖଦାୟକମ୍

ଯେ କ୍ଷେତ୍ରର ମଧ୍ୟଭାଗ ସ୍ଥୂଳ ଓ ଏକ ପାର୍ଶ୍ୱ ସୂକ୍ଷ୍ମ ଅନ୍ୟ ପାର୍ଶ୍ୱ ସ୍ଥୂଳ ସେ କ୍ଷେତ୍ରକୁ ମୁରଜ କ୍ଷେତ୍ର କୁହନ୍ତି । ଏହି ଭୂମି ଗୃହ-ମାନଙ୍କର ଅତିଶୟ ଦୁଃଖ ଦାୟକ ଅଟଇ ।

## ବ୍ୟଜନ ଭୂମି ଲକ୍ଷଣ

୫—ଯତ୍‌କ୍ଷେତ୍ରଂବ୍ୟଜନାକାରଂବ୍ୟଜନାଖ୍ୟଂଭବେତ୍‌ଧ୍ରୁବମ୍
କୋଣଷଟ୍‌କୈ ସମାୟୁକ୍ତଂ ପ୍ରାଣୀନାଂ ମଶୁଭପ୍ରଦଂ

ଷଟ୍‌କୋଣଯୁକ୍ତ ବ୍ୟଜନାକାର ଭୂମିକୁ ବ୍ୟଜନ ଭୂମି କହନ୍ତି ଏହି ବାସ୍ତୁ ମାଳିକ ପକ୍ଷେ ଅତ୍ୟନ୍ତ ଅଶୁଭ ଦାୟକ ।

## ଭଦ୍ର ସନ ଭୂମ ଲକ୍ଷଣ

ଯତ୍ର ଚତୁର୍ଭୂଜେ କ୍ଷେତ୍ରେ କୋଣାଶ୍ଚୈଷା ଭୂଜାସମାଃ
ତଦ୍‌ଭଦ୍ରାସନମାଖ୍ୟାତଂ ବର୍ଗକ୍ଷେତ୍ର ମିତିସ୍ମୃତମ୍

ଭଦ୍ରାସନ କ୍ଷେତ୍ରକୁ ଚତୁର୍ଭୂଜ କ୍ଷେତ୍ର ବା ବର୍ଗକ୍ଷେତ୍ର କୁହନ୍ତି ।

ଯସ୍ୟ ଚତୁର୍ଭୁଜ କ୍ଷେତ୍ରସ୍ୟ ସର୍ବେଭୁଜାଃ ପରସ୍ପର ସମାନାଃ
କୋଣଶ୍ଚ ସମାଖ୍ୟାତ୍ତଦ୍ ବର୍ଗକ୍ଷେତ୍ରମ୍ ।

। ଇତି କ୍ଷେତ୍ରମିତୌ ।

ଆୟତଂ ଚତୁରସ୍ରଂଚ ବୃତ୍ତଃଭଦ୍ରାସନ ସ୍ତଥା
ଏତଂ ସମତଳଶ୍ଚେତ୍ ସ୍ୟାତ୍ ଗୃହୀଣାଂ ଶୁଭଦାୟକମ୍

ଆୟତନାଦି ବାସ୍ତୁଚତୁଷ୍ଟୟ ସମତଳ ଓ ଦୋଷ ରହିତ ହେଲେ ଗୃହୀପକ୍ଷେ ଶୁଭ ଦାୟକ ।

## ଚକ୍ରାକାର ଭୂମି ଲକ୍ଷଣ

ଚକ୍ରାକାରଂହି ଯତ୍ କ୍ଷେତ୍ରଂପାର୍ଶ୍ୱେ ବନ୍ଧକ୍ୱଚିତ୍ କ୍ୱଚିତ୍
ଚକ୍ରାଖ୍ୟମିତି ବିଜ୍ଞେୟଂ ପତ୍ନୀପ୍ରାଣ ବିନାଶକୃତ୍

ଚକ୍ରାକାର କ୍ଷେତ୍ରର ପାର୍ଶ୍ୱଦେଶେ କୌଣସି କୌଣସି ସ୍ଥାନେ ବନ୍ଧ ଦେଖାଗଲେ ତାହାକୁ ଚକ୍ରବାସ୍ତୁ କହନ୍ତି ସେ ଭୂମିରେ ବାସ କଲେ ପତ୍ନୀ ହାନି ହୁଏ ।

## ବୃହନ୍ମୁଖ ଭୂମି ଲକ୍ଷଣ

ଯେଉଁ କ୍ଷେତ୍ରର ଅଗ୍ରଭାଗ ଅତ୍ୟନ୍ତ ପ୍ରଶସ୍ତ ଏବଂ ନିମ୍ନଭାଗ ସୂକ୍ଷ୍ମ ତାହାକୁ ବୃହନ୍ମୁଖ ଭୂମି କୁହନ୍ତି ଏହିବାସ୍ତୁ ଅତିଶୟ ଭୟଦାୟକ ଓ ଗୃହୀର ପ୍ରାଣନାଶ ମଧ୍ୟ କରଏ ।

## ଦଣ୍ଡ ଭୂମି ଲକ୍ଷଣ

ଦଣ୍ଡାକାରଞ୍ଚ ଯତ୍‌କ୍ଷେତ୍ରଂ ଦୈର୍ଘ୍ୟ ପ୍ରସ୍ଥାଦ୍ ଦ୍ୱିଗୁଣକମ
ତତୋଽଧିକଂ ଭବେତ୍ କ୍ଷେତ୍ରଂ କ୍ଷେତ୍ରଂଶକ୍ରନାକୃତ୍

ଯେଉଁ ଦଣ୍ଡାକାର କ୍ଷେତ୍ରର ପ୍ରସ୍ଥ ଅପେକ୍ଷା ଦୀର୍ଘ ଦୁଇଗୁଣ ବା ତତୋଽଧିକ ଅଟେ ତାହାକୁ ଦଣ୍ଡଭୂମି କହନ୍ତି । ଏହି ବାସ୍ତୁରେ ବାସ କଲେ ଶକ୍ତିହୀନ ଅବସ୍ଥା ଘଟିବ ।

## ବିଷମ ଭୂମି ଲକ୍ଷଣ

ଯସ୍ୟସର୍ବେଭୁଜାଃ ପରସ୍ପରଂନ୍ତୁ ଭୁଜାଃ କିନ୍ତୁ ସମ୍ମୁଖେଽମିଥ
ସ୍ଥୂଳୌ କୋଣାଶ୍ଚ ବିଷମାସ୍ତ ବିଷମାସ୍ୟୁତମ୍

ଯେଉଁ କ୍ଷେତ୍ରର ସବୁ ସୀମାରେ ଭୁଜ ପରସ୍ପର ସମାନ ନଥାଏ କିନ୍ତୁ ସମ୍ମୁଖ ସ୍ଥୂଳଥାଏ କୋଣମାନ ବିଷମ ହୋଇଥାଏ ତାହାକୁ ବିଷମ ଭୂମି କହନ୍ତି । ଏ ଭୂମିରେ ବାସ କରିବା ବିପଦପୂର୍ଣ୍ଣ ଅଟେ ।

## ପ୍ରଣବ ଭୂମି ଲକ୍ଷଣ

ଆଦ୍ୟନ୍ତ ବର୍ତ୍ତୁଳାକାରଂ ତନୁମଧ୍ୟଂ ଭବେଦ୍ୟଦା
ପ୍ରଣବାଖ୍ୟଂ ଭବେତ୍ କ୍ଷେତ୍ର ମତ୍ତୀବ ଭୟଦାୟକମ୍

ଯେଉଁ କ୍ଷେତ୍ରର ଆଦ୍ୟନ୍ତ ଗୋଲାକାର ଏବଂ ମଧ୍ୟଭାଗ ସୂକ୍ଷ୍ମ ତାହାକୁ ପ୍ରଣବ ବାସ୍ତୁ କହନ୍ତି । ସେହି ବାସ୍ତୁ ଅତି ଭୟଦାୟକ ଅଟେ ।

## ଧନୁ ଆକୃତି ଭୂମି ଲକ୍ଷଣ

ବୃତ୍ତାର୍ଦ୍ଧ ସଦୃଶଂ କ୍ଷେତ୍ରଂ କାର୍ମୁକାଖ୍ୟଂ ପ୍ରକୀର୍ତ୍ତିତମ୍
ଅତ୍ୟଶୁଭଞ୍ଚ ଜନ୍ତୂନାଂ ଧନାପତ୍ୟାଦି ନାଶକମ୍

ଯେଉଁ କ୍ଷେତ୍ର ଧନୁ ଆକାର ବା ଅର୍ଦ୍ଧ ବୃତ୍ତାକାର ତାହାକୁ ଧନ୍ୱାକୃତି ଭୂମି କହନ୍ତି । ସେହି କ୍ଷେତ୍ରରେ ବାସ କରିଲେ ଅତ୍ୟନ୍ତ ଅଶୁଭ ହୁଏ ଏବଂ ଧନ ପୁତ୍ରାଦି ନାଶ ହୁଏ ।

---

ମୁଦ୍ରାକର—ବିମଳା ଲ' ପ୍ରେସ୍, ଅଲିଶା ବଜାର, କଟକ-୨

# କେତେକ ଉପାଦେୟ ଗ୍ରନ୍ଥ

| | |
|---|---|
| ଭୃଗୁସଂହିତା ( ସେଟ୍ ) | ଟ ୧୨୫-୦୦ |
| ଷଡ଼ ଗ୍ରନ୍ଥାବଳୀ ( ସେଟ୍ ) | ଟ ୧୫୦-୦୦ |
| ବଳରାମ ଦାସଙ୍କ ଦକ୍ଷିଣୀ ରାମାୟଣ ବା ଦାଣ୍ଡି ରାମାୟଣ | ଟ ୧୧୦-୦୦ |
| ତୁଳସୀ ଦାସଙ୍କ ରାମାୟଣ ବା ରାମଚରିତ ମାନସ | ଟ ୭୦-୦୦ |
| ଜଗମୋହନ ରାମାୟଣ ( ସେଟ୍ ) | ଟ ୬୦ ୦୦ |
| ଭଗବତ ଦାନ ରାମାୟଣ ,, | ଟ ୪୫-୦୦ |
| ନୃସିଂହ ପୁରାଣ ,, | ଟ ୪୫-୦୦ |
| ହରିବଂଶ ,, | ଟ ୪୫-୦୦ |
| ଛଷ୍ଟୁ କେଶରୀ ପୁରାଣ ,, | ଟ ୩୦-୦୦ |
| ଶିବ ପୁରାଣ ,, | ଟ ୨୫-୦୦ |
| ପୁରୋହିତ କର୍ମକାଣ୍ଡ ସମ୍ପୂର୍ଣ୍ଣ | ଟ ୬୫-୦୦ |
| ଗାୟତ୍ରୀ ସାର ସଂଗ୍ରହ | ଟ ୧୨ ୦୦ |
| ପାତଞ୍ଜଳ ଯୋଗ ଦର୍ଶନ | ଟ ୩୦-୦୦ |
| ଗଙ୍ଗାଧର ଗ୍ରନ୍ଥାବଳୀ | ଟ ୩୬-୦୦ |
| ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ | ଟ ୨୦-୦୦ |
| ଭାଗବତ ଗ୍ରନ୍ଥାବଳୀ | ଟ ୩୫-୦୦ |
| ଅଷ୍ଟାବକ୍ରୀୟ ଗୀତା | ଟ ୩୩-୦୦ |
| ଭଗବାନ ଦର୍ଶନ | ଟ ୨-୨୫ |
| ତାନ୍ତ୍ରୀ କର୍ମକାଣ୍ଡ ( [illegible] ) | ଟ ୨୦-୦୦ |

---

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର ଅଲିଶାବଜାର ର, କଟକ-୨

ଫୋନ୍ ନଂ—୨୪୬୯୨